

# ସେକାଳି ଆସରଗୁଂଟି

ଶ୍ରୀ ଭବାନୀପ୍ରସାଦ ଦେବ

G. Kanungo

ପ୍ରସ୍ତୁତ ପ୍ରକାଶନୀ— ଦ୍ୱିଶିଷ୍ଟ ଅବଦାନ ।

# ଯେ କଳି ଆସଇ ଫୁଟି

ଶ୍ରୀ ଭବାନୀ ପ୍ରସାଦ ଦେଓ

# ଉତ୍ସର୍ଗ

ମୋର ବାଲ୍ୟବନ୍ଧୁ :

ଟିକାଲର ଯୁବରାଜ

ସ୍ୱର୍ଗୀୟ ରାମଚନ୍ଦ୍ର ଦେବଙ୍କ

ସ୍ମୃତି ଉଦ୍ଦେଶରେ ।

ଲେଖକ ।

## ପ୍ରଭାତ ପ୍ରକାଶନୀର ଅବଦାନ

ରାଜା ଜଗନ୍ନାଥ ଦେବ ବର୍ମା ଙ୍କ —

**ସପନ ତରୀ**

କବିତା କୁସୁମର ଅଭିନବ ଗୁଚ୍ଛ ।

ମୂଲ୍ୟ ବାର ଅଣା ।

ଶ୍ରୀ ଭବାନୀ ପ୍ରସାଦ ଦେଓଙ୍କ—

**ନେଳକଳ ଆସର ଫୁଟି**

ଦରଫୁଟା କଢ଼ିର ମନଭୁଲା ମର୍ମର ଗଳ୍ପ ।

ମୂଲ୍ୟ ଦଶ ଅଣା ।

ଶ୍ରୀ କପିଳେଶ୍ୱର ଦାସ, ଏମ୍ .ଏ., ବି.ଇଡ୍ ଙ୍କ—

**ଜୀବନ ଚିନ୍ତା**

ଲବ୍‌ଧପ୍ରତିଷ୍ଠ ସାହିତ୍ୟିକଙ୍କ ନିପୁଣ ଲେଖନୀ ନିସୃତ

ପ୍ରବନ୍ଧ ମାଳା ।



# ପୂଜା ପୁରସ୍କାର

ବିଜୟା ଦଶମୀ ।

ହିନ୍ଦୁ ସନ୍ତାନର ଏ ଗୋଟିଏ ପର୍ବ ଦିନ । ସନ୍ଧ୍ୟା ରାଗୀର କମନୀୟ ଧୂମିଳ ଅବଗୁଣ୍ଠନ ତଳେ ବସୁଧା ଅତି ପ୍ରସନ୍ନ ଦିଶୁଥାଏ ।

ବଡ଼ ଦିନ ଛୁଟି । ଘରକୁ ନଯାଇ ହୋଷ୍ଟେଲରେ ରହି-ଯାଇଛିଁ । ସହପାଠୀ କଲେଜ ଛାତ୍ର ସମସ୍ତେ ପର୍ବ ଉପଲକ୍ଷରେ ଯେ ଯାହା କାର୍ଯ୍ୟରେ ବ୍ୟସ୍ତ । କିନ୍ତୁ ମୋର ମନରେ ଟିକିଏ ଆନନ୍ଦ ନଥାଏ । ସତାବନ ନମ୍ବର ଛୋଟ କୋଠରୀରେ ବସି ଏଣୁ ତେଣୁ କେତେ ଭାବୁଥାଏ, କଳନା ନାହିଁ । ଟେବୁଲ୍‌ର ବହି ଗୁଡ଼ାକ ଉପରେ ନଜର ପଡ଼ିଲା । ଚୌକିରୁ ଧଡ଼କିନା ଉଠି ବହି ଗୁଡ଼ାକୁ ତଳେ ଜୋର୍‌ରେ ଛେଚି ଦେଲି-ବିରକ୍ତିରୁ ।

ଏପରି କାହିଁକି କରେ--ଗୋଟିଏ କାରଣରୁ । ଅସଲ କଥାଟି ହେଉଛି ପଇସା ଅଭାବ । ପଇସା କ'ଣ କରି ନ ପାରେ ? ପଇସା କରେ—ଅମୀର, ଆଉ ଘଡ଼ିକେ ଫକୀର । ମୋର ଅବସ୍ଥା ଆଜି ଅମୀର ନୁହେ—ଫକୀର । ଆଜି ପର୍ବ ଦିନରେ କିଏ କେତେ ମଉଜ ମଜଲିସ୍ କରୁଛି , କିଏ କାହାକୁ ପୂଜା-ଉପହାର ଦେଉଛି , କିଏ ଦୋକାନରୁ ମିଠାଇ କିଣି ପିଲାମାନଙ୍କୁ ବାଣ୍ଟିବାରେ ଲାଗିଛି , ଆଉ କିଏ ନୂଆ ବେଶ-ଭୂଷା ପିନ୍ଧି ସାଥିର କାନ୍ଧ ଉପରେ ହାତ ପକାଇ ଗୁଣୁ ଗୁଣୁ ସ୍ୱରରେ ଗୀତ ଗାଇ ଚାଲି ଯାଉଛି---ଇମିତି କେତେ କ'ଣ ଚାଲିଚି, ତା'ର ହିସାବ ନାହିଁ । ମୋର ଭାଗ୍ୟରେ ଖଦି ଖଣ୍ଡେ ପିନ୍ଧିବାକୁ କମ୍ବା ପେଟ ପୂରାଇ ଗଣ୍ଡେ ଖାଇବାକୁ ନାହିଁ । ଏହା ମୋର ଭାଗ୍ୟ ! କପାଳକୁ ବାହୁନି କାନ୍ଦିବା ପାଇଁ ଅଦୃଷ୍ଟ ଶିଖାଇଚି ।

ମୋର ବାପ—ମା ତ ପିଲା ଦିନରୁ ଚାଲି ଯାଇଛନ୍ତି । ଆଉ କାହା ପାଖରେ ମାନ—ଅଭିମାନ କରିବି ? ମୋର ଦାଦା ଜଣକ ଜମି-ବାଡି ବୁଝା-ସୁଝା କରି ମୋର ପଢ଼ା ପାଇଁ ଦଶ-ପନ୍ଦର ଅତି କଷ୍ଟରେ ଦେଉଛନ୍ତି—ତାଙ୍କ ପାଖରେ କ'ଣ ଅଭିମାନ କରିବି ? ନା—ନା—ଭାବୁଥାଏ , ମୁଁ ନ ଥିଲେ ଭଲ ହୁଅନ୍ତା । ଏ ଅବସ୍ଥାରେ ମୋ ପାଇଁ ସେ ଦଶହଜା ଖର୍ଚ୍ଚ କପରି ପଠାଇବେ ? ଏହି ହତଭାଗ୍ୟ ଜୀବନରେ କେତେ କଣ ଶୁଣିବାକୁ ଅଛି, ଦେଖିବାକୁ ଅଛି, ସହିବାକୁ ଅଛି—ତାହା କିଏ ଆଉ କହିବ ?

ଏପରି କେତେ କଣ ଭାବୁଛି, ମୋର ଆଦୌ ଖିଆଲ ନାହିଁ । ସମୁଦ୍ରର ଢେଉ ଉପରେ ଢେଉ ଆସି ଯେପରି ଉଭେଇ ଯାଏ, କଳା-ମେଘରେ ବିଜୁଳି କ୍ଷଣେ ଦେଖା ଦେଇ ଯେପରି ଲୁଚିଯାଏ—ସେଇପରି ମୋର ଭାବନା ହଠାତ୍ ଆସି କେଉଁ ସୁଦୂର ଗାଇଜରେ ଲୀନ ହୁଏ—ତାହା କଳନା କରି ହୁଏ ନାହିଁ ।

ସଞ୍ଜ ନଇଁ ଆସିଲା ।

ସବୁଜ ପ୍ରାନ୍ତର ଉପରେ ଦଶମୀ ଚନ୍ଦ୍ରର ରୂପେଲୀ ଜ୍ୟୋତ୍ସ୍ନା ବିଛି ହୋଇ ପଡ଼ିଲା । ରୁଦ୍ଧ ବାତାୟନ ମାର୍ଗରେ ଗୋଟିଏ କ୍ଷୀଣାଲୋକ-ରେଖା ଆସି ମୋର ଛାତି ଉପରେ ଯେତେବେଳେ ପଡ଼ିଲା ମୁଁ ଚମକି ପଡ଼ିଲି । ଭାବିଲି—କେତେ ସମୟ ହେଲା ମୁଁ ଏପରି ବସି ରହିଲିଣି !

ଠିକ୍ ସେତିକିବେଳେ ଶରତ ଆସି ମୋର ପଛଆଡ଼େ ଠିଆ ହୋଇ ହସ ହସ ହୋଇ କହିଲା, 'ଗିରିଶ୍, ଏତେବେଳ ଯାଏ ବସିଛୁ ! ଆଜି ଦଶହରା । ଆ, ଦେବୀଙ୍କୁ—ଦର୍ଶନ କରି ଆସିବା ।'

'ଦଶହରା' ପଦଟି ଶୁଣି ବିରକ୍ତି ଅନୁଭବ କଲି । ତଥାପି ମନ କଥା ମନରେ ମାରି କହିଲି, ' ନାଇଁ ଭାଇ, ମୋର ଦେହଟା କମିତି ଖରାପ ଲାଗୁଛି , ଯାଇ ପାରିବି ନାହିଁ—କ୍ଷମା କରିବୁ । ତୁ ଯାଇ ଦର୍ଶନ କରି ଆ ।'

ଶରତ୍ ଚାଲିଗଲା ।

ଘଡ଼ିରେ ବାଜିଲା ସାତ । 'ଲାଇଟ୍'ଟି ଲଗାଇ ଢାଳେ ପାଣି ଢକ ଢକ ପିଇଗଲି । ନିକଟରେ ପଡ଼ିଥିବା ବହୁ ପୁରୁଣା ଆରାମ-ଚୌକିଟା ଉପରେ ଅବଶ ଶରୀରଟାକୁ ଢାଳି ଦେଲି

ମନରେ ଶାନ୍ତି ଆଣିବା ପାଇଁ ।

ଶୁଇ ନିଦ ଲାଗିଗଲା ।

ବାହାରେ 'ମୋଟର ହର୍ଣ୍ଣ' ଶବ୍ଦରେ ଚମକି ଉଠିଲି । ଅହେତୁକ ଭାବରେ 'ଇକନମିକ୍ସ'ବହିଟା ଧରି ଏପାଖ ସେପାଖ ଲେଉଟାଉଛି—ମୋର ପଛ ଆଡ଼୍କୁ କେହି ଆସିଲା ପରି ବୋଧ କଲି । ମୁହଁ ବୁଲାଇ ଦେଖେତ ପୂର୍ବ—ପରିଚିତା ଜ୍ୟୋତ୍ସ୍ନା ।

ସେ ହସ-ହସ ମୁଖରେ ନମସ୍କାର କଲା । ମୁଁ ପ୍ରତ୍ୟଭି-ନନ୍ଦନ ଜଣାଇ ସାମନାର ଚୌକିଟିକୁ ଦେଖାଇ ଅନୁରୋଧ କଲି, 'ବସ ।'

ସେ ବସିଲା ।

ଏତେ ରାତିରେ ଜ୍ୟୋତ୍ସ୍ନା ମୋ ନିକଟକୁ କାହିଁକି ଆସିଲା? ସେ ବଡ଼ ଘରର ଝିଅ-ଆଉ ଅବିବାହିତା । କିଏ ଦେଖିଲେ କ'ଣ ଭାବିବେ—ଏତ କଲେଜ୍ ହୋଷ୍ଟେଲ୍—ଛାତ୍ର ମାନଙ୍କ ଠାକୁଲ-ଠାପରି ସ୍ଥାନ । ଯଦି ବା କିଏ ଦେଖେ ?—ଏହିପରି କେତେ ଭାବନା ମୋର ହୃଦୟକୁ ଆଘାତ କଲା ।

ଜ୍ୟୋତ୍ସ୍ନା ମୋର ଭାବନା-ସ୍ରୋତରେ ବାଧା ଦେଇ କହିଲା,'ଆପଣ ଭଲ ଅଛନ୍ତିତ? ଅନେକ ଦିନ ହେଲା ଦେଖା-ସାକ୍ଷାତ ନଥିଲା । ଆଜ ମୋର ପରମ ସୌଭାଗ୍ୟ । ଭାବିଥିଲି, ଆପଣ କେଉଁଆଡ଼େ ଚାଲି ଯାଇଥିବେ ।'

—'ହଁ,ଧନ୍ୟବାଦ ! ତମେ କିପରି ?'

—'ଏକ ରକମ ଭଲ-'

ତହୁଁ ଗମ୍ଭୀର କଣ୍ଠରେ ପ୍ରଶ୍ନ କଲି, 'ଜ୍ୟୋତ୍ସ୍ନା ତମେ ଏତେ ରାତିରେ କୁଆଡ଼େ ? '

—'ଆପଣଙ୍କୁ ଥରେ ଦେଖି ଯିବାକୁ ।'

—'ଓଃ, ଏ ହତଭାଗ୍ୟକୁ ଦେଖି ବା ତୁମର ଲାଭ କ'ଣ ? ତମେ ବଡ ଘରର ଝିଅ—ମୁଁ ପୁଣି ଗରୀବ ! ତଥାପି ମୋ ପ୍ରତି ଦୟା ରଖିଛ—ତାହା ଯଥେଷ୍ଟ ! ଧନ୍ୟବାଦ !'

—'ଗିରୀଶ୍ ବାବୁ, ଆପଣ କ'ଣ ଇମିତି କହୁଛନ୍ତି ! ଦୁନିଆରେ କିଏ ବଡ, କିଏ ସାନ ? ସ୍ରଷ୍ଟାଙ୍କ ଦୃଷ୍ଟିରେ ସମସ୍ତେ ସମାନ । ଆପଣ ଜାଣି-ଶୁଣି ସୁଦ୍ଧା ଏପରି କହିବା ଅସଙ୍ଗତ ନୁହେଁ କି ?'

ଟିକିଏ ହସି ଚୁପ ହେଲି ।

ଠନ୍ ଠନ୍ ବାଜିଲା ଦଶ ।

ଜ୍ୟୋତ୍ସ୍ନା ଚୌକିରୁ ଉଠି 'ବେଗ୍'ରୁ ଦୁଇ ଖଣ୍ଡ ସଦ୍ୟ ପ୍ରକାଶିତ ଗଳ୍ପ ବହି —'ଉତ୍କଳିକା' ଓ 'ବନଜ୍ୟୋତ୍ସ୍ନା'-ମୋ ହାତକୁ ବଢ଼ାଇ ଦେଲା ।

ମୁଁ ସନ୍ଦିଗ୍ଧ କଣ୍ଠରେ ପଚାରିଲି, 'ଏ କ'ଣ ?'

ସେ ହସି ହସି ଉତ୍ତର ଦେଲା, 'ଆଜି ପୂଜା ଦଶହରା ।'

ମନେ ମନେ ଜ୍ୟୋତ୍ସ୍ନାକୁ ଶତ ଅଭିନନ୍ଦନ ଜଣାଇ କହିଲି, 'ଧନ୍ୟବାଦ !'

ସେ ଚାଲିଗଲା ବିଦାୟ ନେଇ ।

ଭାବବତୀର ଅଭୟ—ପୁରସ୍କାର ପାଇ ମୋର ଅନ୍ତର ପୁଲକିତ ହେଲା ।

ଶେଯ ଉପରେ ଆଖି ବୁଜୁ ବୁଜୁ ଅନତି ଦୂରରୁ କାନରେ ପଡ଼ିଲା—ଜଣେ ତରୁଣୀ ବୀଣା ସଙ୍ଗେ ତାର କଣ୍ଠ-ଝଙ୍କାରକୁ ମିଶାଇ ଲଳିତ ସ୍ୱରରେ ଗାଉଛି—

ନିଅ ଆହେ ପ୍ରିୟ ମୋର ଉପହାର,
ଅଭାଗିନୀ ଗୁନ୍ଥା ଏ କୁସୁମ-ହାର ।



# ହତ୍ୟାର ବିଭୀଷିକା

ରାତି ସାଢ଼େ ଦୁଇଟା ।

ମୁଁ ଆଜି ନର୍ମଳ କଟକରୁ ଫେରି ମୋର ବସାରେ ଶୋଇଥାଏ । ମଶା ଯୋଗୁ ମତେ ଆଦୌ ନିଦ ମାଡୁ ନଥାଏ । ଛଟ ପଟ ହୋଇ ଶେଯଟିରେ ପଡ଼ିଥାଏ ।

ହଠାତ୍ ଫୋନଟି କ୍ରିଂକ୍ରିଂ ବାଜିଲା । ହାଲିଆ ଯୋଗୁ ଫୋନ୍ ପାଖକୁ ଗଲି ନାହିଁ । ଆଖି ବୁଜି ପଡ଼ି ରହିଲି । ପାଞ୍ଚ ମିନଟ ପରେ ପୁନଶ୍ଚ ଫୋନ୍ଟି ବାଜିଲା । ଭାବିଲି — ଏତେ ରାତିରେ କା'ର କ'ଣ କାମ ଅଛିଯେ ଏପରି ଥରକୁ ଥର ଡାକୁଛି ! ଛି ! ଡିଟେକ୍ଟିଭ ହେଲେ ଏପରି ଚବିଶି ଘଣ୍ଟା ଖଟିବାକୁ ହେବ —ପ୍ରାଣରେ ଟିକିଏ ହେଲେ ଶାନ୍ତି ନାହିଁ । କ'ଣ କରିବି ? ବାଧ ହୋଇ ଉଠିଲି ।ଫୋନ୍ ପାଖକୁ ଯାଇ ଶୁଣିଲି ପାଞ୍ଚ ନମ୍ବରରୁ ଡାକରା । ପାଞ୍ଚ ନମ୍ବର ତ ପୁଲିଶ୍ ଷ୍ଟେସନର ।

ପଚାରିଲି—'କିଏ ?'

ଉତ୍ତର ପାଇଲି, 'ରଣଜିତ୍ ସିଂହ, ପୁଲିଶ୍ ଇନ୍‌ସ୍‌ପେକ୍‌ଟର୍ ।'

ବୁଝିଲି କିଛି ନା କିଛି କାଣ୍ଡ ଘଟିଛି । ଯିବାକୁ ହେବ । ନ ହେଲେ ସାଢ଼େ ଦୁଇଟା ରାତ୍ରରେ ପୁଲିଶ୍ ଡାକରା କାହିଁକି ?

ପଚାରିଲି—'କ'ଣ ଦରକାର ?

ଇନ୍‌ସ୍‌ପେକ୍‌ଟର କହିଲେ, 'ଶାନ୍ତିପୁରରେ ଭୀଷଣ ହତ୍ୟାକାଣ୍ଡ ! ଶୀଘ୍ର ଆସନ୍ତୁ । ଦୁହେଁ ଯାଇ ତଦନ୍ତ କରିବା ।

'ଭୀଷଣ ହତ୍ୟାକାଣ୍ଡ !'—ଚକିତ ହେଲି । ନିଘୋଡ ନିଦରେ ଶୋଇଥିବା ନିର୍ମଳର ପିଠି ଉପରେ ଗୋଟିଏ ମାରି ଉଠାଇଲି । ସେ ଆଖି ମଳି ମଳି ଉଠି ପଚାରିଲା, 'କ'ଣ ପୂର୍ଣ୍ଣି ବାବୁ ?'

'ଶାନ୍ତିପୁରରେ ଭୀଷଣ ହତ୍ୟା କାଣ୍ଡ ! ଚାଲ, ଶୀଘ୍ର ସେଠାକୁ ଯାଇ ତଦନ୍ତ କରିବାକୁ ହେବ ।'

ନିର୍ମଳ ଟେବୁଲ ଉପରେ ଥିବା ରିଭଲ୍‌ଭରଟି ମୋ ହାତକୁ ବଢ଼ାଇ ଦେଇ ମୋଟର ଆଣିବାକୁ ଗେରେଜକୁ ଗଲା । ମୁଁ ଏଥି ଭିତରେ ତାଂରୀଟି ପକେଟ୍‌ରେ ରଖି ବାହାରକୁ ଗଲି । ଦୁହେଁ ମୋଟରରେ ଚଢ଼ି ପୁଲିଶ୍ ଷ୍ଟେସନ ଆଡକୁ ଗଲୁ । ମୋଟରଟି ଯେତେବେଳେ ସେଠାରେ ବନ୍ଦ ହେଲା - ଇନ୍‌ସ୍‌ପେକ୍‌ଟର ସିଂହ ଓ ଆଉ ଦୁଇ ଜଣ ପୁଲିଶ୍ ମୋଟର ନିକଟକୁ ଦଉଡ଼ି ଆସିଲେ । ଇନ୍‌ସ୍‌ପେକ୍‌ଟର କୁ ଦୁହେଁ ନମସ୍କାର କରି ମୋଟର ରୁ ଓହ୍ଲାଇଲୁ ।

ହଠାତ୍ ଜଣେ ପୁଲିଶ୍ କହିଲା— 'ଆଜ୍ଞା, ଚାଲନ୍ତୁ ଶାନ୍ତିପୁର । ଡେରି ହେଲେ ସର୍ବନାଶ ।'

କହିଲି, 'କ'ଣ ହୋଇଛି କହୁନା କିଆଁ ? ଏଠାରେ ସବୁ ବୁଝିଲା ପରେ ଯିବା । ମିଛଟାରେ କିଛି ନ ବୁଝି ସେଠାକୁ ଯାଇ କ'ଣ କରିବା ?'

ଇନ୍‌ସ୍‌ପେକ୍‌ଟର ବିଳମ୍ବ ନକରି କହିଲେ, 'ଚାଲନ୍ତୁ, ସେଠାରେ ତ ଆପଣ ସବୁ ତଦନ୍ତ କରି ଜାଣିପାରିବେ, ଏଠାରେ ମୁଁ ଆଉ କ'ଣ କହିବି'

ସମସ୍ତେ ମୋଟର ରେ ବସିଲୁ । ନିର୍ମଳ ଖୁବ୍ ଜୋର୍ ରେ ମୋଟର ବାହିନେଲା । ରାସ୍ତାରେ କେତେ ନଦୀ, ବନ, ପର୍ବତ ଡେଇଁ ଦୁଇ ଘଣ୍ଟାରେ ଯାଇ ପହଞ୍ଚିଲୁ ଶାନ୍ତିପୁରରେ । ଇନ୍‌ସ୍‌ପେକ୍‌ଟର ଙ୍କ ନିର୍ଦ୍ଦେଶ କ୍ରମେ ଗାଡିଟି ବନ୍ଦହେଲା ଗୋଟାଏ ନେଳିଆ ରଙ୍ଗ ଦୋ ମହଲା କୋଠା ସାମନାରେ ।

ନିର୍ମଳ ପଚାରିଲା, ' ମର୍ଡର୍ କଣ ଏଠାରେ ହୋଇଛି?'

ଇନ୍‌ସ୍‌ପେକ୍‌ଟର କହିଲେ 'ହଁ, ହଁ, ଓଃ ! କି ହତ୍ୟା! ମୁଁ ତ ଜୀବନରେ ଆଜିଯାଏ ଏପରି ଗୋଟିଏ ଘଟଣା ଦେଖି ନାହିଁ । ଆଉ ଯେପରି ହତ୍ୟା ହୋଇଛି, ତା'ର ଆଦି ଅନ୍ତ କିଛି ଜଣାଯାଉ ନାହିଁ ।'

ସମସ୍ତେ ମୋଟରରୁ ଓହ୍ଲାଇଲୁ । ଇନ୍‌ସ୍‌ପେକ୍‌ଟର ପକେଟ୍ ରୁ ଚାବିଟିଏ ବାହାର କରି ଆଗରେ ଯାଇ ଗୋଟିଏ ବନ୍ଦ ହୋଇଥିବା କୋଠରୀର ତାଲା ଖୋଲିଲେ । ତାଙ୍କ ପଛେ ପଛେ ଆମେ ସମସ୍ତେ ଭିତରକୁ ଗଲୁ । କିଛି ଦୂର ଯାଇ ଦେଖିଲୁ ଗୋଟିଏ ଛୋଟିଆ ଅଫିସ୍ ରୁମ୍ ରେ ଦର ପୋଡା ଶବଟିଏ ପଡ଼ିଛି । ପଚାରିଲି, ଏହି କେସ୍ ଟା କ'ଣ ତଦନ୍ତ କରିବା କଥା ?.

ଜଣେ ପୁଲିଶ୍ କହିଲା, 'ଆଜ୍ଞା, ହଁ ।'

ଶବ ନିକଟକୁ ଯାଇ ଏ ପାଖ ସେ ପାଖ ତନ୍ନ ତନ୍ନ

କର ଗୁହାଁଲ । ମୁହଁଟି ପୋଡ଼ି ଯାଇ ଥିବାରୁ ଲୋକଟି କିଏ ଧରା ଯାଉ ନଥାଏ । ଏ ଭିତରେ ନର୍ମଳ ଏଣେ ତେଣେ ଖୋଜି ଖୋଜି ଟେବୁଲ ତଳେ ଥିବା ଗ୍ଲେଟିଆ ଟିଣ ଟିଏ ଆଣି କହିଲା, 'ପୂର୍ଣ୍ଣ, ଦେଖିଲୁ-ଏଥିରେ ପେଟ୍ରୋଲ ଥିଲା ପର ଜଣା ଯାଉଛି । ଟିଣଟି ଖୋଲ ଦେଖିଲ—ଅଳ୍ପ ପେଟ୍ରୋଲ୍ ଅଛି । କିଛି କ୍ଷଣ ପରେ ତୁନ ରହି ଇନ୍‌ସ୍‌ପେକ୍‌ଟର୍‌ ଙ୍କୁ ଲକ୍ଷ୍ୟ କର କହିଲ, 'ଦେଖନ୍ତୁ ଏ ଶବଟି ନିଶ୍ଚୟ ପେଟ୍ରୋଲ୍ ରେ ପୋଡ଼ା ହୋଇଛି ।'

ଇନ୍‌ସ୍‌ପେକ୍‌ଟର ତୁନ ହୋଇ ରହିଲେ ।

ନିକଟରେ ଥିବା ଟେବୁଲ୍ ଉପରେ ଯାଇ ବସିଲ । ତା ଉପରେ ଗୁର ଛଅ ଟି ବହି ଓ କେତେ ଲେଟର୍ ପେପର୍ ଛଡ଼ା ଆଉ କିଛି ନ ଥାଏ । ଖଣ୍ଡିଏ ବହି ଦେଖୁ ଦେଖୁ ନଜର ପଡ଼ିଲା—ପେପର୍ ୱେଇଟ୍ ତଳେ ଖଣ୍ଡିଏ ଗ୍ଲେଟ୍ କାଗଜ ଉପରେ କଣ ନା ଦୁଇ ଧାଡ଼ି ଲେଖା ହୋଇଛି । କାଗଜଟି ଆଣି ପଢ଼ିଲ,ଲେଖା ଅଛି—'ମୋର କେତେକ ଘରୋଇ ବିଷୟ ଯୋଗୁଁ ମୁଁ ଆତ୍ମହତ୍ୟା କରୁଛି—

ସୁରେନ୍ଦ୍ର ।'

ଧଡ଼କିନା ଟେବୁଲ୍ ରୁ ଉଠି ଇନ୍‌ସ୍‌ପେକ୍‌ଟର୍ କୁ ପଗ୍ଲରିଲ,'ସୁରେନ୍ଦ୍ର କିଏ ଆପଣ ଜାଣନ୍ତି ?'

'ହଁ,ଏ ଘର ପରା ସୁରେନ୍ଦ୍ରର । ସେ ଜଣେ ଫୋଟୋ-ଗ୍ରାଫର୍ । ସେ ଏଇ ଘରେ କୋଠିଏ ପାଖରେ ରହେ; ଅନ୍ୟ ପାଖଟି କଲକତାର ଜଣେ ଭଦ୍ରଲୋକଙ୍କୁ ଭଡ଼ାକୁ ଦେଇ ଥିଲା । ତାଙ୍କର ନାଁ ବପିନବାବୁ । ସେ ଦୁହିଁଙ୍କ ବ୍ୟତୀତ ଏଠାରେ ଆଉ କେହି ଥିବାର କିଏ ଦେଖି ନାହିଁ କିମ୍ବା ଶୁଣିନାହିଁ ।'

ପଗ୍ଲରିଲ,'ତେବେ ବପିନ ବାବୁ ବର୍ତ୍ତମାନ କେଉଁଠି ?'

ସେ କହିଲେ, 'ବିପିନ ବାବୁ ! କାହିଁ ତାଙ୍କର ତ ଦେଖାନାହିଁ । ବୋଧହୁଏ ସେ ସୁରେନ୍ଦ୍ରକୁ ହତ୍ୟା କରି ଚାଲି ଯାଇଛନ୍ତି । ଆଉ ସୁରେନ୍ଦ୍ର ନିଜେ ଆତ୍ମହତ୍ୟା କଲା ପରି ଲେଖି-ଛନ୍ତି । ମୁଁ ଅନୁମାନ କରୁଛି ଏ ଶବଟି ନିଶ୍ଚୟ ସୁରେନ୍ଦ୍ରର ।'

'ନା,ନା,ଆପଣ ଭୁଲ ବୁଝିଛନ୍ତି ! ସୁରେନ୍ଦ୍ରକୁ ବିପିନ-ବାବୁ ହତ୍ୟା କରି ନାହାନ୍ତି । ଏଥିରେ କିଛି ଗୂଢ଼ ରହସ୍ୟ ଅଛି ।' ଏହା କହି—ମୁଁ ପାଇଥିବା କାଗଜ ଟି ତାଙ୍କୁ ବଢ଼ାଇ ଦେଲି ।

ଇନ୍‌ସ୍‌ପେକ୍‌ଟର ସେହି ଲେଖାଟି ପଢ଼ି ଦୀର୍ଘ ନିଶ୍ୱାସ ଟିଏ ଛାଡ଼ି କହିଲେ,'ପୂର୍ଣ୍ଣବାବୁ,ଦେଖିଲ—ସୁରେନ୍ଦ୍ର ନିଜେ ତ ଆତ୍ମ ହତ୍ୟା କରିଛି । ଆଉ ଏନ୍‌କ୍ୱାଏରୀ କଣ ? ଦୋଷୀ ତ କେହି ନୁହେ;କାହାକୁ ଗିରଫ୍ କରିବା? ଚାଲନ୍ତୁ ଯିବା । ବାପ୍‌ରେ-ଲୋକଟି ନିଜେ ମରି ଆମକୁ କେତେ ହଇରାଣ କରିଛି ।'

ମୁଁ ନୀରବ ହୋଇ ରହିଲି ।

ଇନ୍‌ସ୍‌ପେକ୍‌ଟର କିଛି କ୍ଷଣ ପରେ ନିର୍ମଳକୁ ଧରି ବାହାରକୁ ଗଲେ ।

ମୁଁ ପୁନଶ୍ଚ ଶବ ନିକଟକୁ ଯାଇ ଦେଖିଲି-ବକ୍ଷ ଉପରେ ଗୋଟିଏ ରିଭଲ୍‌ଭର୍ ଗୁଳି ବାଜିଛି । ଆଉ ଦାଗ ପୋଡା କୋଟ୍ ପକେଟ୍ ଭିତରୁ ବାହାର କଲି ଗୋଟିଏ **Identification-Card.** ପରେ ସ୍ପଷ୍ଟ ଜାଣିଲି—ଏ ଶବଟି ସୁରେନ୍ଦ୍ରର ନୁହେ, ବିପିନ ବାବୁଙ୍କର ।

ସିଗାରେଟ୍ ଟିଏ ଲଗାଇ ବାହାରକୁ ଆସିଲି । ଇନ୍‌ସ୍‌ପେକ୍‌ଟର ସହିତ ଓ ଆଉ ସମସ୍ତଙ୍କୁ ଘଟଣା ଟି ବୁଝାଇ ଦେଲି । ସମସ୍ତେ ଏ ସବୁ କଥା ଶୁଣି ଅବାକ୍ । କିଛି କ୍ଷଣ ପରେ ନିର୍ମଳ

ଆଉ ମୁଁ ଇନ୍‌ସ୍‌ପେକ୍‌ଟରଙ୍କ ଠାରୁ ବିଦାୟ ନେଇ ଚାଲି ଆସିଲି ।

× × × × ×

ସାତ ଆଠ ଦିନ ବିତି ଯାଇଛି ।

ହତ୍ୟାକାରୀ ସୁରେନ୍ଦ୍ର କୁ ଧରିବା ଲାଗି ମୁଁ ଅନେକ ଯତ୍ନ କରି ସଫଳ ହୋଇନାହିଁ ।

ଦିନେ ରେଳ ଷ୍ଟେସନ୍‌ରେ ବୁଲୁ ବୁଲୁ ଦେଖିଲି ଗୋଟାଏ ଲୋକ ଖବର କାଗଜଟିଏ କିଣି ପକେଟ୍ ରୁ ମନି-ପାର୍ସ୍‌ଟି ବାହାର କରି **hawker** କୁ ପଇସା ଦେଲା । ସେ ସମ-ୟରେ ତା'ର ପେଣ୍ଟ୍ ପକେଟ୍‌ରୁ ଦୁଇ ଖଣ୍ଡ କାଗଜ ତଳେ ପଡ଼ିଯାଇଛି,କିନ୍ତୁ ତା'ର ଖିଆଲ ନାହିଁ । ସେ ତର ତର ହୋଇ ଚାଲିଗଲା । ପବନରେ କାଗଜ ଦୁଇଟି ସେତେବେଳେ ଉଡ଼ି ଉଡ଼ି ମୋର ନିକଟକୁ ଆସିଲା ଆଗ୍ରହରେ ତାକୁ ଉଠାଇ ଦେଖିଲି ଆଉ କିଛି ନୁହେ—ଦୁଇଟି ଚେକ୍ । ଗୋଟିଏ ବିପିନବାବୁ ଙ୍କର ଦସ୍‌ଖତ୍ ହୋଇଛି, ଅପର ଟି ସୁରେନ୍ଦ୍ର ର । ଆଶାନ୍ୱିତ ହୋଇ ଭାବିଲି ସୁରେନ୍ଦ୍ର ଧରାପଡ଼ିଛି । ନଚେତ୍ ଏ ଚେକ୍ ଦୁଇଟି ଏହା ପାଖରେ କିପରି ଥିଲା ? ସୁରେନ୍ଦ୍ର କୁ ଖୋଜିବାକୁ ବାହାରିଲି । ତାକୁ କେବେ ଦେଖି ନାହିଁ । ଅଥଚ ଅନୁମାନ କଲି ଲୋକଟି ଅବଶ୍ୟ ସୁରେନ୍ଦ୍ର ।

ଖୋଜୁ ଖୋଜୁ ଦେଖିଲି ସେ ବସି **Waiting Room** ରେ ଖବର କାଗଜ ପଢ଼ୁଛି । ନିକଟକୁ ଯାଇ ଖଣ୍ଡିଏ ଚଉକିରେ ବସିଲି । କିଛିକ୍ଷଣ ପରେ ତାକୁ ଗମ୍ଭୀର କଣ୍ଠରେ ପଚାରିଲି, 'ଆପଣଙ୍କର ପରିଚୟ ପାଇ ପାରେ ?'

ନିରୁତ୍ତର ।

ପୁଣି ପଚାରିଲି , 'ଆପଣଙ୍କର କିଛି ଜିନିସ ହଜିଛି ?'

'ନା ।'

ଆପଣଙ୍କର ଦୁଇ ଖଣ୍ଡ କାଗଜ ପକେଟ୍‌ରୁ ତଳେ ପଡ଼ି ଯାଇଛି । ଦେଖନ୍ତୁ, ତାହା ଜଣେ ଲୋକ ପାଇଛି । '

ସେ ପକେଟ୍ ଦେଖି କହିଲା, 'ଆଜ୍ଞା ,ହଁ, ଦୁଇ ଖଣ୍ଡ କାଗଜ ପଡ଼ିଯାଇଛି । ଦୟା କରି ଆପଣ ସେ ଲୋକଟିକୁ ଦେଖାଇ ପାରିବେ ? କାଗଜ ଦୁଇଟି ନିତାନ୍ତ ଦରକାର । '

କହିଲି – 'ଆପଣ ତା' କୁ ଚିହ୍ନି ପାରିବେ ନାହିଁ । ଏଠାରେ ବସିଥାନ୍ତୁ । ମୁଁ ଯାଇ ଲୋକ ଟିକୁ ଧରିଆଣେ । ଏତକ କହି ବାହାର କୁ ଚାଲିଆସିଲି । ଷ୍ଟେସନ୍ ରେ ଥିବା ଫୋନ୍ ନିକଟକୁ ଯାଇ ପୁଲିଶ୍ ଇନସ୍‌ପେକ୍‌ଟର୍ ଙ୍କୁ ସଶସ୍ତ୍ର ପୁଲିଶ୍ ଦଳ ସହିତ ଷ୍ଟେସନ **Waiting Room** କୁ ଶିଘ୍ର ଆସିବାକୁ ଜଣାଇଲି ।

ଦଶ ମିନିଟ୍ ରେ ଇନସ୍‌ପେକ୍‌ଟର୍ ଫିହ ପୁଲିଶ୍ ଦଳ ସହିତ ଆସି **Waiting Room** ରେ ପହଞ୍ଚିଲେ । ଖବର କାଗଜ ପଢ଼ୁଥିବା ଲୋକଟିକୁ ଲକ୍ଷ୍ୟ କରି ମତେ କହିଲେ , 'ଏ ସୁରେନ୍ଦ୍ର ! ଏ ସୁରେନ୍ଦ୍ର ! ହତ୍ୟାକାରୀ ! ! ଗିରଫ୍ କର । '

ଦୁଇ ଜଣ ପୁଲିଶ୍ ସୁରେନ୍ଦ୍ର ଙ୍କୁ ହାତକଡ଼ି ପକାଇ ମୋଟର ରେ ଚଢ଼ି ଚାଲିଲେ ଜେଲ୍ ଖାନା କୁ ।

× × × ×

ଆରମ୍ଭନ ।

ବିପିନ୍‌ବାବୁଙ୍କ ହତ୍ୟା କେସ୍‌ରେ ସୁରେନ୍ଦ୍ରର ବିରୁଦ୍ଧରେ ମୋତେ ସାକ୍ଷ୍ୟ ଦେବାକୁ ହେବ । ଅଫିସ୍ ରେ ବସି କାଗଜ ଏଣୁ ତେଣୁ ଲେଉଟାଉଛି—ଇନସ୍ ପେକଟର୍ ଫିହ ଓ ଜେଲ୍ ୱ୍ୟାର୍ଡର ଆସି ମତେ କହିଲେ, ' ସୁରେନ୍ଦ୍ର

'ରାତ୍ରରେ ଜେଲ୍ ଖାନା ରେ ମରି ଯାଇଛି । ଆସନ୍ତୁ ଥରେ ଦେଖିବେ—କ'ଣ ହେଲା—ଗୋଟିକରୁ ଦୁଇଟି ହୋଇଛି ।'

ମୁଁ ତରତର ହୋଇ ସେମାନଙ୍କ ସଙ୍ଗେ ଜେଲ୍ ଖାନା କୁ ଗଲି । ଦେଖିଲି—ଠିକ୍ କଥା—ହତ୍ୟାକାରୀ ସୁରେନ୍ଦ୍ର ଆଉ ଜୀବନରେ ନାହିଁ । ଏଠାରେ କେସ୍ ନିଷ୍ପତ୍ତି ହୋଇଛି ।

ସୁରେନ୍ଦ୍ର ନିକଟ ରେ ଆଉ କ'ଣ ଜିନିଷ ଅଛି ବୋଲି ଖୋଜି ଖୋଜି ଯୋତା ଭିତରୁ ବାହାରିଲା ଗୋଟିଏ ଗ୍ଲେଟ ଶିଶି । ତା ଛଡ଼ା ଆଉ କିଛି ନାହିଁ । ଅନୁମାନ କଲି—ଶିଶିଟି ରେ କିଛି ଜିନିଷ ଥିଲା ଯାହା ଦ୍ୱାରା ସେ ଆତ୍ମହତ୍ୟା କରିଛି ।

ଶିଶି ଟି **Chemical Examiner** ଙ୍କ ଠାକୁ ପରୀକ୍ଷା କରିବାପାଇଁ ପଠାଇଲି ।

ରିପୋର୍ଟ ଆସିଲା—'ପୋଟାସିୟମ୍ ସାଇନାଇଡ୍ ।'



# କଷ୍ଟର ଅବସାନ

ଧାରା ଶ୍ରାବଣ ।

ଅମାବାସ୍ୟା ରାତ୍ରି । ଘନ ଅନ୍ଧକାର । ମୁହଁକୁ ମୁହଁ ଦିଶୁନଥାଏ । ଅଜସ୍ର ବାରି ପାତରେ ଧରଣୀ ଶୀତଳ ହୋଇଛି । ରାସ୍ତା କଡରେ ପାଣି ସୁଅ ଛୁଟିଛି—କଳ କଳ ନାଦରେ । ବିଜୁଳି ଚକ୍ ଚକ୍‌ରେ, ଦଡ଼ ଦଡ଼, ଚଡ଼ ଚଡ଼ ଶବ୍ଦରେ ମୋର ଦୁର୍ବଳ ହୃଦୟଟା ଥରି ଉଠୁଥାଏ । ତା'ସାଥିରେ ଝିଙ୍କାରୀର ଶୂନ୍ୟ—ତନ୍ତ୍ରୀ ସ୍ୱର ଆହୁରି ବେପଥୁ ଦାୟକ ହୋଇଥାଏ ।

ଗାଁ ଗହଳର ଦୀପ ଗୁଡ଼ିକ ଲିଭି ଆସୁଥାଏ । ଚତୁର୍ଦ୍ଦିଗ ନିସ୍ତବ୍ଧ, ନିଶ୍ଚଳ । ଶାନ୍ତି ପାଇବା ପାଇଁ ଅବଶ ଶରୀରଟାକୁ ଢାଳି ଦେଲି ବିଛଣା ଉପରେ । ପାଖରେ କେହି ନାହାନ୍ତି । ଏକାକୀ-ମୁଁ । ମୋର ସାଥି କେବଳ ଥିଲା—ଲକ୍ଷ୍ମୀଧର ବାବୁଙ୍କ 'ବର୍ଷାର ଶେଷ'—

ଠଣ୍ ଠଣ୍ ବାଜିଲା ଏଗାର । ଠିକ୍ ସେତିକି ବେଳେ ମୋର କାନରେ ପଡ଼ିଲା-'ମା—'କ୍ଷୀଣ, ଅତି କ୍ଷୀଣ ଓ ଦୀର୍ଘ ସେ ସ୍ୱର । ସେଥି ପ୍ରତି କାନ ନ ପାତି ଦୁଇ, ତିନ ପୃଷ୍ଠା ଲେଉଟାଇ ଗଲି । ପୁଣି ସେଇ ସ୍ୱର—'ମା,ଭାତ ମୁଠାଏ-'ପଢ଼ାର ସ୍ରୋତ ଅଟକି ଗଲା । ଭାବିଲି—ଏତେ ରାତିରେ ଭାତ କେଉଁଠୁ ଆସିବ? କେହିଜଣେ ଭିକାରୀ—

ପାଖରେ ଶୋଇଥିବା କୁକୁରଟି ଭୁକି ଉଠିଲା;ଦାଣ୍ଡ ଦୁଆରେ ବାଡ଼ି ଠକ୍ ଠକ୍ ସହିତ ଆଉଥରେ ଶୁଭିଲା -ସେଇ କ୍ଷୀଣ, କରୁଣ ସ୍ୱର-'ମା—'। ଦୁଆର ଫିଟାଇଲି,ଭିକାରୀଟିଏ ଠିଆ ହୋଇଛି । ହାଡ଼ମାଳ ଛଡ଼ା ଆଉ ତା'ଦେହରେ କିଛି ନଥିଲା । ଖଣ୍ଡେ ଛିଣ୍ଡା-ଲେଙ୍କଡ଼ା ଲୁଗା, କାନ୍ଧ ଉପରେ ଚିରା ଗାମୁଛା ଖଣ୍ଡେ । ଦେଖିଲେ ମନେହୁଏ ଯେପରି ସମାଜର ତାଚ୍ଛଲ୍ୟରେ ତା'ର ଜୀବନ ମ୍ରିୟମାଣ ହୋଇଛି । ହାତରେ ବାଉଁଶ ବାଡ଼ି ପଟେ-ଯାହାର ସାହାଯ୍ୟରେ ସେ ଏ ଦୁନିଆର ଦୁର୍ଗମ ପଥକୁ କାଟି ଚାଲିଛି । ତା'ଛଡ଼ା ଆଉ କିଛି ଜିନିଷ ସେ ଦୁନିଆରୁ ପାଇନି । ଆଉ ତା'ର ପାଖେ ପାଖେ ଲାଗିଛି ଗୋଟାଏ କଳା କୁକୁର । ଦାଣ୍ଡ ଦୁଆରେ ମୋର ଠିଆ ହେବା ଦେଖି ସେଇ କୁକୁର ଆନନ୍ଦରେ ଲାଞ୍ଜ ହଲାଇ ଭିକାରୀର ଗୋଡ଼କୁ ଚାଟି ଢୋଇଲା ।

ଭିକାରୀ ପିଣ୍ଡା ଉପରେ ବସି ପଡ଼ି କହିଲା, 'ବାବୁ, ଭାତଗଣ୍ଡେ ଦେବେନି ?'

କହିଲି,'ଭାତ ! ଏତେ ରାତିରେ ଭାତ କେଉଁଠୁ ମିଳିବ? ଯା'ଯା'-ଚାଲିଯା' । ଇମିତି ମାଗି ଖିଆଙ୍କୁ କିଏ କେତେ ଦେବ?'

ସେ କିଛି ନ କହି କରୁଣ ଦୃଷ୍ଟିରେ ମୋର ମୁହଁକୁ ଥରେ ଚାହିଁ ଦେଇ କହିଲା,'ହେଉ ।'

ଅନେକ ଭିକାରୀଙ୍କୁ ମୁଁ ଦେଖିଛି । କେତେ ଯେ ଏଇ ଦୁଆରୁ ହତାଶ ହୋଇ ଫେରିଛନ୍ତି ତା'ର ସଂଖ୍ୟାନାହିଁ । କିନ୍ତୁ କାହିଁକି କେଜାଣି ଏଇ ବୃଦ୍ଧଟିର ସେଇ କରୁଣ ଗୁହାରୀରେ ମୋର ମନ ପରିବର୍ତ୍ତନ ହେଲା । ପକେଟ୍‌ରୁ ସୁକିଟିଏ ବାହାର କରି ତା'କୁ ଯାଚିଲି ।

ସେ ହସି କହିଲା,'ପଇସା ! ମୋର କି ଦରକାର ? ନା,ନା, ପଇସା ନେଇ କ'ଣ କରିବି ? ଭାତ ଗଣ୍ଡେ ମିଳିଲେ ଖାନ୍ତି ।'

ଭାତ ଗଣ୍ଡେ ଆଣି ଦେଲି ।

ସେ ଆନନ୍ଦ ଗଦ୍‌ଗଦ କଣ୍ଠରେ କହିଲା, 'ବାବୁ,ଆଜି ମୋର ପ୍ରାଣ ରଖିଲ ।

'ହେଉ,ଖା—'କହି ତା ପାଖରେ ବସି ପଡ଼ିଲି ।

ଭାତକିଛି ଖାଇବା ଆଗରୁ କୁକୁରଟିକୁ ଡାକି ଭାତ ଚୁଞ୍ଚାଏ ଦେଲା ।

କୁକୁର ପ୍ରତି ବୁଢ଼ାର ଏଇ ସ୍ନେହ ଦେଖି କୌତୂହଳରୁ ପ୍ରଶ୍ନ କଲି,'ବୁଢା,ଏ କୁକୁରଟି କଣ ତୋର--'

'ହଁ---'

--'ତୋର କେହି ନାହାଁନ୍ତି?'

'ଥିଲେ—ସମସ୍ତେ ଥିଲେ;କିନ୍ତୁ ଆଜି କେହି ନାହାଁନ୍ତି । ଅଛି କେବଳ ମୁଁ--ଜଣେ'

'ତୋର ନାଁ'

ସେ ଦୀର୍ଘ ନିଶ୍ୱାସ ଟାଏ ପକାଇ କହିଲା, 'ମୋର ନା? ସେଥିରୁ କ'ଣ ପାଇବେ ? କାଙ୍ଗାଳ-'

ଖାଇବା ଶେଷ ହୋଇଛି ।

ପୁଣି ପ୍ରଶ୍ନ କଲି, 'ଘର?'

'ବେଶି ଦୂର'—ଏତକ କହି କୁକୁରଟିକୁ ସେ ଆଉଁସି ଦେଲା । ଆଉ ତା'ର ଆଖିରୁ ଦୁଇ ଧାର ଲୁହ ଗଡ଼ି ପଡ଼ିଲା । କଣ୍ଠ ରୁଦ୍ଧ ହେଲା । କାନ୍ଧ ଉପରକୁ ସେ ଆଉଜି ପଡ଼ିଲା । ତା'ର ଦୁଃଖରେ ଯେପରି ସମବେଦନା ଜଣାଇ କୁକୁରଟି ଊର୍ଦ୍ଧ୍ୱ ମୁଖରେ 'ଭୌ'କରି କାନ୍ଦି ଉଠିଲା ।

କ୍ଷଣକ ପାଇଁ ତୁନି ହେଲି । ତା'ର ଜୀବନୀ ଶୁଣିବା ପାଇଁ ପୁନଃ ପୁନଃ ପ୍ରଶ୍ନ କରି ଯେ ତା'ର ହୃଦୟରେ ବାଧା ଦେଇଛି ଆଉ ତା'ର ଆଖିରୁ ଲୁହ ଗଡ଼ାଇଛି-ଏ କଥା ଭାବି ବୁଢ଼ା ନିକଟକୁ ଯାଇ ତା'ର ହାତ ଦୁଇଟି ଉଠି ଧରି କହିଲି, 'ବାଧା ଦେଇଛି, କ୍ଷମାକର ।'

ସେ ଟିକିଏ ହସି ଉତ୍ତର ଦେଲା—'କ୍ଷମା ! କାହିଁକି ବାବୁ, ତୁମେ କି ଦୋଷ କଲ ? ଏ ସଂସାର ରେ ମଣିଷ କୁ ମଣିଷ କ୍ଷମା ଦେଇ ପାରେ ନାହିଁ ।'

କହିଲି, 'ନା, ନା, ମୁଁ ତୋ କଥା ପଚାରି ତତେ ଆଘାତ ଦେଇଛି । କ୍ଷମା କର ।'

'ଆଘାତ କରିଛ ନୁହେଁ—ବରଂ ମୁଁ ତହିଁରେ ଆନନ୍ଦିତ ହୋଇଛି । ତଦ୍ୱାରା ମୁଁ ଭୁଲି ଯାଇଥିବା ଅଲୋଡ଼ା ଜୀବନର ପୁରୁଣା କଥା ଗୁଡ଼ିକ ମନେ ପଡ଼ୁଛି ।'ଏତିକି କହି ମୋ'ର ଦୁଇ-ହାତ ଧରି ପକାଇଲା ।

ମୋର ତୁଣ୍ଡରୁ କଥା ସ୍ଫୁରିଲା ନାହିଁ ।

'ହଠାତ୍ ସେ ପୁଣି କହିଲା, 'ବାବୁ, ଯାଉଛି । ତୁମେ ମୋ ପ୍ରତି ଯେଉଁ ସହାନୁଭୂତି ଦେଖାଇଛ, ମୁଁ ଆଶୀର୍ବାଦ କରୁଛି— ମୋର ପରି ବୁଢ଼ା ହୁଅ, କିନ୍ତୁ ମୋ ପରି ହତଭାଗ୍ୟ ହୁଅନାହିଁ ।'

କହିଲି,'ସିବୁ କୁଆଡେ ଏଇ ଅନ୍ଧାର ରାତିରେ ? ଏଠାରେ ଶୋଇପଡେ ।' ସେ ହସି ହସି କହିଲା, ' ମୁଁ ପଥ ଅଲୋଡା ପଥର ପଥିକ । 'ମୋର ଅନୁରୋଧ ରକ୍ଷା ନକରି ସେ ଅଗ୍ରସର ହେଲା । ଅନ୍ଧାର ରେ ପଥ ଦେଖାଇ ଦେବା ପାଇଁ ମେଘ ଯେପରି ବିଜୁଳି ଛନ୍ଦରେ ହସି ଦେଲା ।

× × × × ×

ଆର ଦିନ ।

ନ'ଟା ବାଜିଲା । ହାତରେ କାଗଜ ବିଡାଏ ଧରି ବାହାରି ପଡିଲି କଚେରୀକୁ । ଯାଉ ଯାଉ ଦେଖିଲି—ରାସ୍ତା ବାଁ ପାଖରେ ଯେଉଁ ବରଗଛ ଟି କେତେ ଯୁଗରୁ ଠିଆ ହୋଇ କାହାକୁ ଆଶ୍ରୟ ଦେଇନ ଆଜି ତା'ତଳେ ଗୁରୁପାଞ୍ଚ ଜଣ ମେଟ୍ରୋନ୍ଭର ଠିଆ ହୋଇଛନ୍ତି । ହାତରେ ଖଟେଣ୍ଡ ଖଟେଣ୍ଡ ଠେଙ୍ଗା । ଉଠ,ଉଠ, ଧର, ଧର, ଲଗାଇଛନ୍ତି । ଆଉ ସେମାନଙ୍କ ଚତୁର୍ଦ୍ଦିଗରେ କୁକୁର ଟିଏ ବୁଲି 'ଭୋ ଭୋ' ରଡ଼ି ଛାଡୁଛି ।

ନିକଟକୁ ଗଲି । ଦେଖିଲି ଶବଟିଏ ପଡିଛି-ଗଲା ରାତିର ସେଇ ଭିକାରୀ'ର । ମୋତେ ଚିହ୍ନି ପାରି କୁକୁରଟି ପାଖକୁ ଦଉଡ଼ି ଆସି ମୋର ପାଦଟିକୁ ଚାଟି ଦେଲା । ତା'ର ଉତ୍ତର ଦେବାକୁ ସମୟ ନଥିଲା । କର୍ତ୍ତବ୍ୟ ମେହେନ୍ତର ର କଣ୍ଟୁରି ଠେଙ୍ଗା ଠିକ୍ ସେତିକବେଳେ ତା ମୁଣ୍ଡ ଉପରେ ପଡିଲା ।ତା ଦୁକ୍ ବା କେତେ? ଏକା ପ୍ରହାରକେ ସେ ଢଳି ପଡିଲା ତା'ର ପ୍ରଭୁର ପାଦ ତଳେ ।

ମୋର ପଛ ଆଡୁ କିଏ କହିଲା, 'ଓ,ସେଇ ପଲ୍ଲୀ-କବି-'

ମୁହଁ ବୁଲାଇ ଦେଖିଲି—ଜଣେ ଅପରିଚିତ ।

ଅଜାଣତରେ ମୋର ଆଖିରୁ ଦୁଇଧାର ଲୁହ ଗଡିଗଲା ।

ହାୟ ରେ କବି ! ହତଭାଗ୍ୟ !!



## ହେଲା କଣ ?

ଆସନ୍ନ ସନ୍ଧ୍ୟା ।

ମନ୍ଦିରରେ ଆରତି ଘଣ୍ଟା ଠଣ ଠଣ ବାଜିଲା । ରାସ୍ତାର ଖମ୍ବ ଗୁଡ଼ିକରେ ବିଜୁଳି ବତି ଝଲସି ଉଠିଲା ।

ପୂଝାରୀ ଟୋକା ଜଳଖିଆ ଟିକିଏ ଟେବୁଲ୍ ଉପରେ ଥୋଇ ଦେଇ ଚାଲି ଗଲା । ଦିନ ତମାମ ସହର ରେ ବୁଲି ବୁଲି ଆସି ଅବଶ ଶରୀରଟାକୁ ଢ଼ାଳି ଦେଲି ଆରାମ ଚଉକି ଉପରେ । ସିଗାରେଟ୍ ଟି ଲଗାଉ ଲଗାଉ ନଜର ପଡ଼ିଲା ପାଖରେ ଥିବା ଖଣ୍ଡିଏ **Illustrated Weekly** ଉପରେ । ମେଗାଜୀନ୍ ଟି ଉଠାଇ ଆଣି ଏ ପାଖ ସେ ପାଖ ଥରେ ଲେଉଟାଇ ଗଲି ; କିନ୍ତୁ ପଢ଼ିବାରେ ମନ ଆଦୌ ନିୟୋଗ ହେଲା ନାହିଁ । ବହିଟି ଫିଙ୍ଗି ଦେଇ ଦୀପ ଶିଖା ଟିକିଏ ଦବେଇ ଦେଲି । କ୍ଷଣ କାଳ ଆଖି ବୁଜି ରହିଲି । ମନରେ ଶତ ଶତ କଳ୍ପନା ଖେଳି

ଉଠୁଥାଏ । ଇଂରେଜରେ କହିଲା ପରି-Building Castles in the air;'ମୁଁ ଯେ କେତେ କଥା ମନରେ ଭାବୁଥାଏ ସେଥିର କଳନା ନାହିଁ ।

ଏ ଭିତରେ ବରାଡ଼ ଟି ଆସି କେତେ ବେଳେ ଜଳଖିଆ ଛଳ ସଫା କରି ଚାଲି ଯାଇଛି ମୋର ସେଥି ପ୍ରତି ନଜର ନାହିଁ । ପୂଝାରୀ ଆସି ଯେତେବେଳେ ମୋର କଳ୍ପନା-ସ୍ରୋତରେ ବନ୍ଧ ପକାଇ କହିଲା, 'ବାବୁ'—ସେତେ ବେଳେ ଚମକି ପଡ଼ିଲି । ମୋର ଭାବନା ସବୁ କେଉଁ ଅଜଣା ରାଇଜରେ ଲୁଚିଗଲା । 'ହୁଁ ହୁଁ' କହି ଧାପଟି ତେଜି ବସିଲି—ଟେବୁଲ୍ ପାଖରେ । ପୂଝାରୀ ଚା'ଆଣି ଥୋଇ ଦେଲା । ଜଳଖିଆ ଖୋଜୁ ଖୋଜୁ ଦେଖିଲି—ଗୋଟିଏ ଭୂଆ କୋଣରେ ବସି ତାହା ଖାଇବାରେ ଲାଗିଛି । କ'ଣ କରିବ ? ଭୋକରେ ପେଟ ଜଳୁଥାଏ । ତରତର ହୋଇ ଚା'ମୁନ୍ଦେ ପିଇ—'ପ୍ରତିହିଂସା'ବହି ଖଣ୍ଡିକ ଏକା ନିଶ୍ୱାସରେ ପଢ଼ିବାରେ ଲାଗିଲି ।

ଘୋଡ଼ା ବାଲାର ଡାକରା ସଙ୍ଗେ ଘୋଡ଼ା ପିଠିର କୋରଡ଼ା ଶବ୍ଦ ଚଟ୍ ଚଟ୍ ଶୁଭିଲା । ଠିକ୍ ସେତିକି ବେଳେ ମୋର ଏକାଗ୍ରତା ମନରେ ବ୍ୟାଘାତ ଦେଇ କାନରେ ପଡ଼ିଲା- 'ବାବୁ,ଭାତ ଗଣ୍ଡାଏ ଦିଅ ।'

କି ଗଭୀର ସେ କରୁଣ ସ୍ୱର ! ଦେଖିଲି ଦାଣ୍ଡ ଦୁଆରେ ଜଣେ ଭିକାରୀ ଠିଆ ହୋଇଛି । ବାଟରେ ଯା'ଆସ କରିବା ଲୋକେ କେହି ତା'କୁ ପଚାରୁ ନାହାଁନ୍ତି କି ଚାହୁଁ ନାହାଁନ୍ତି । ପକେଟ୍ ରୁ ଚାରୋଟି ପଇସା ବାହାର କରି ଭିକାରୀ କୁ ଦେବା ପାଇଁ ପୂଝାରୀ ହାତରେ ବଢ଼ାଇ ଦେଲି । ପୂଝାରୀ ପଇସା ଦେଇ ଭିକାରୀ ଠାରୁ ଆଶୀର୍ବାଦ ଟିଏ ନେଇ ଚାଲିଗଲା । ନଜର

କାଯ୍ୟରେ । ଏତେ ଭିକାରୀ ଗୀତରେ ଥରେ ଥରେ ମର୍ମସ୍ପର୍ଶୀ ଗୀତଟିଏ ଗାଇ ଗାଇ ଚାଲିଗଲା ରାତ୍ରେ କେଉଁଠି ଆଶ୍ରୟ ନେବାକୁ ।

'ରେଡ଼ିଓ'ଗାନ ବନ୍ଦ ହେଲା । ସିନେମାରୁ ଲୋକେ ଫେରିଲେ । ନକ୍ଷତ୍ରବର୍ତ୍ତୀ ଗୃହର ଘରଗୁଡ଼ିକ ନିସ୍ତବ୍ଧ ଲାଗିଲା; କିନ୍ତୁ ମୋର ଉପନ୍ୟାସ ପଢ଼ା ବନ୍ଦ ନହୋଇ ନଥିର ସ୍ରୋତ ପରି ଚାଲିଲା ।

ମୁକ୍ତ ଆକାଶରେ କଳା ମେଘ ଖଣ୍ଡ ଖଣ୍ଡ ହୋଇ ଭାସିଲେ । ବାଦଲର ଫାଙ୍କେ ଫାଙ୍କେ ଦଶମୀ ଚନ୍ଦ୍ର ନିଷ୍ପ୍ରଭ ହୋଇ ଆସୁଥାଏ । ପୂର୍ବ ଦିଗରୁ ଆଉ କେତେ ମେଘ ଖଣ୍ଡ ଆସି ଆକାଶକୁ ଘନୀଭୂତ କରିଦେଲେ । ବିଜୁଳିର ଝଲକ ସଙ୍ଗେ ମେଘ ମନ୍ଦ୍ର ଗର୍ଜ୍ଜନ କଲା । ସୁଲୁ ସୁଲିଆ ଶୀତାଳିଆ ପବନ ଦେହରେ ଲାଗି ହାତରୁ ବହିଟି କେତେ ବେଳେ ଖସି ମୋତେ ନିଦ ଲାଗିଗଲା, ମୋର ମନେ ନାହିଁ ।

× × × ×

କଳା କାଉଟି କାଆ ବୋଲି ରାବ ଦେଲା ।

ନିଦ ଭାଙ୍ଗିଗଲା । ତର ତର ହୋଇ ଉଠିଲି । ଗାଧୁଆଟା ଶେଷ କରି ବସିଛି, ପୋଷ୍ଟମେନ୍ ଖଣ୍ଡିଏ ପତ୍ର ଦେଇ ଚାଲିଗଲା । ପତ୍ରଟିକୁ ଖୋଲି ଦେଖିଲି-ଶିଶିରର । କଲେଜରେ ବି.ଏ ପଢ଼ିଲା ବେଳେ ଶିଶିର ଥିଲା ମୋର ସହପାଠୀ । ଦୁହେଁ ହୋଷ୍ଟେଲ୍‌ରେ ଗୋଟିଏ ବଖରାରେ ଥିଲୁ । ବି.ଏ ପାସ କଲା ପରେ ଦୀର୍ଘ ଚାରି ବର୍ଷ ହେଲା ଆଉ ପରସ୍ପର ଦେଖା ନାହିଁ ; କିମ୍ବା ପତ୍ର ଲେଖା ଲେଖି ବି ଚଳିନାହିଁ । ବହୁଦିନ ପରେ ଶିଶିରର ଲମ୍ବା ପତ୍ରଟି ଦେଖି ତା'କୁ ଦେଖିଲା ପରି ଆନନ୍ଦରେ

ମଗ୍ନ ହେଲି । କିନ୍ତୁ ମୁଁ ଯେ ଏଠାରେ ରହି ଦିନେ ହେଲେ ତା'ର କଥା ଭାବି ନାହିଁ ବା ଖଣ୍ଡିଏ ପତ୍ର ତା ନିକଟକୁ ମଧ୍ୟ ପଠାଇନାହିଁ, ଏହା ଭାବି ଲଜ୍ଜିତ ହେଲି ।

ପତ୍ରଟି ପଢ଼ୁ ପଢ଼ୁ ହଠାତ୍ ମନେ ପଡ଼ିଲା ଜିଲା ବୋର୍ଡ 'ଇଲେକ୍‌ସନ୍' କଥା । ନିର୍ବାଚନ ପାଇଁ ସହରରୁ ଦୁଇ ଜଣ ପ୍ରାର୍ଥୀ । ଜଣେ ମୋର ବନ୍ଧୁ ଶଶିବାବୁ । ମୋର ଭୋଟଟି ତାଙ୍କୁ ଦେବାକୁ ପ୍ରତିଶ୍ରୁତି ଦେଇଥିଲି । ସେଥି ଯୋଗୁଁ ନିକଟରେ ଦୋହଲୁ ଥିବା ଢ଼ିଲା ପାଇଜାମା ଟି ଗଳାଇ ଦେଇ ଗଲି ଡାକ ବଙ୍ଗଳାକୁ । ସେଠାରେ ହଲଦିଆ ଡବାରେ ଭୋଟ କାଗଜ ପକାଇ ବାହାରକୁ ଆସିଲି ।

ଟାଣ ଖରା ଯୋଗୁଁ ଦହଗଞ୍ଜ ଲାଗୁଥାଏ । ବଙ୍ଗଳା ସାମନା ରେ ଥିବା ଗୋଟିଏ ଆମ୍ବ ଗଛ ତଳେ ବିଶ୍ରାମ ନେଲି । ପାଞ୍ଚ ମିନିଟ୍ ବସିଛି—ହଠାତ୍ ଲୋକ ଗହଳ ଭିତରୁ ସାହେବି ପୋଷାକଧାରୀ ନବୀନ ମୋ ନିକଟକୁ ଆସୁ ଥିବା ଦେଖି ଠିଆ ହେଲି । ତା'ପଛରେ ଜଣେ ଅପରିଚିତ ଭଦ୍ରଲୋକ । ଅଳ୍ପ ଦୂରରୁ ନବୀନ ମତେ ଦେଖି କହିଲା,—'ଜୟହିନ୍ଦ୍ ।'

ମୁଁ ବି ପ୍ରତି-ଅଭିବାଦନ କଲି, 'ଜୟହିନ୍ଦ୍ ।'

ସେ ଦୁହେଁ ଯେତେବେଳେ ନିକଟକୁ ଆସିଲେ, ଅପରିଚିତ ଭଦ୍ରଲୋକଟି କହିଲେ, **'Good morning, friend.'**

ମୁଁ ପ୍ରତ୍ୟାଭିବାଦନ କହିଲି । ନବୀନ ମୁରୁକି ହସୁଥାଏ ।

ଭଦ୍ରଲୋକ ପଚାରିଲେ, 'ରମେଶ ବାବୁ ନା ?'

'ହଁ ।'

ମନେ ମନେ ଭାବୁଥାଏ—ଏ ମୋର ନାଁ' କିପରି

ଜାଣିଲେ ! ସ୍ଥିର କଲି ନବୀନ କହିଥିବ ।

ସମ୍ମାନ ସହକାରେ ଭଦ୍ର ଲୋକଙ୍କୁ ଲକ୍ଷ୍ୟ କରି କହିଲି, 'ଆପଣଙ୍କ ପରିଚୟ ପାଇ ପାରେ କି ?'

ସେ ପକେଟରୁ ଖଣ୍ଡିଏ ସ୍ୱନାମାଙ୍କିତ ପତ୍ର ମତେ ବଢ଼ାଇ ଦେଲେ ।

ପତ୍ର ଦେଖି ବୁଝିଲି—ସେ ଜଣେ ମୋଟର କଂପାନି ଏଜେଣ୍ଟ । ନାମ—ପୂର୍ଣ୍ଣଚନ୍ଦ୍ର ଚଉଧୁରୀ ।

ଠିକ୍ ଏହି ସମୟରେ ଗଲା ରାସ୍ତାର ଭିକାରୀ ଟି ଆସି ଭଦ୍ରଲୋକଙ୍କୁ କରୁଣ ଦୃଷ୍ଟିରେ ଚାହିଁ କହିଲା,'ବାବୁ,ପଇସା-ଟିଏ' ।

ବାବୁ ଭିକାରୀର କଥା କାନରେ ନଦେଇ ପେଣ୍ଟ୍ ପକେଟ୍ରୁ ଛ'ଇଞ୍ଚିଆ ଚୁରୁଟ୍ ଟିଏ ବାହାର କରି ଲଗାଇଲେ । ଧୂଆଁକୁ ଏ ପାଖେ ସେ ପାଖେ ଛାଡ଼ି କଣ ନା ଭାବୁଥିଲା ପରି ଅନୁମାନ ହେଉଥିଲା ।

ଭିକାରୀ ବିକଳ ଚାହାଁଣୀରେ ଫେର୍ ପଇସାଟିଏ ପାଇଁ ହାତ ବଢ଼ାଇଲା ।

କିନ୍ତୁ ଭଦ୍ର ବ୍ୟକ୍ତି ପଇସାଟିଏ ଦେବା ବଦଳରେ ଯୋତା ବାହାର କରି **'Nonsense' 'Stupid'** 'ଅଭଦ୍ରତା' କହି ଭିକରୀର ମୁଣ୍ଡ ଉପରେ ନିର୍ଦ୍ଧୂମ୍ ପ୍ରହାର କଲେ । ଭିକାରୀ ବାପୁଡ଼ାର ଦୁକୁ କେତେ ? ଏକା ପ୍ରହାରକେ ତଳେ ଗଡ଼ି ପଡ଼ିଲା ।

ଭଦ୍ରବ୍ୟକ୍ତି ଆଉ ନବୀନ **'Silly' 'Silly'** କହି ମୋ ଠାରୁ ବିଦାୟ ନେଇ ଗୋଟିଏ ମୋଟର ସାଇକଲ୍ ରେ ଚଢ଼ି ଚାଲିଗଲେ ।

ଭିକାରୀ ଟି ପ୍ରତି ଭଦ୍ର ଲୋକଙ୍କ ଏପରି ନିଷ୍ଠୁର

ବ୍ୟବହାର ଦେଖି ଅଜାଣତେ ମୋ ଆଖିରୁ ଲୁହ ଗଡ଼ିଗଲା । ଭଦ୍ରଲୋକଙ୍କ ପ୍ରତି ମନରେ ଘୃଣା ସଙ୍ଗେ କ୍ରୋଧ ଜନ୍ମିଲା । ତଥାପି ଆପେ ଆପେ ମନକୁ ଶାନ୍ତ କଲି । ତା' ଛଡ଼ା ଆଉ କରିବାର ଉପାୟ କ'ଣ ଥିଲା ?

ମନରେ ସ୍ରଷ୍ଟାଙ୍କ ପ୍ରତି ମଧ୍ୟ ତାଚ୍ଛଲ୍ୟ ଭାବ ଜାତ ହେଲା । ଭାବିଲି—ତୁମର କି କୋଠର ହୃଦୟ ! ନିରୀହ ପ୍ରାଣୀ ପ୍ରତି ଏ ନିର୍ଯ୍ୟାତନା ! ସେ ଅବା କା'ର କ'ଣ କ୍ଷତି କଲା ?

ଠିକ୍ ସେତେବେଳେ ଘଣ୍ଟା ସ୍ତମ୍ଭ ଉପରେ ବାଜିଲା ବାର । ଷ୍ଟେସନରେ ଟପେଟ ଗୋଲ୍ ଥାଏ । ତଥାପି ଭିକାରୀ ଟିକ୍ ଘୁଡ଼ ଘରକୁ ଫେରିବାକୁ ମନ ହେଲା ନାହିଁ । ଗୋଟିଏ ରିକ୍ସାର ବନ୍ଦୋବସ୍ତ କରି ତା'କୁ ସାଙ୍ଗରେ ଧରି ବସାକୁ ଫେରିଲି ।

× × × ×

ଭିକାରୀର ପରିଚୟ ପାଇବା ପାଇଁ ମୁଁ ବାରମ୍ବାର ଚେଷ୍ଟା କରିଛି । କିନ୍ତୁ ମୋର ପ୍ରଶ୍ନକୁ ଠିକ୍ ଉତ୍ତର ନ ଦେଇ ସେ ଅନ୍ୟ କଥା କହି ବସେ । ସେ ତା'ର ଆତ୍ମ ପରିଚୟ ଦେବା ପାଇଁ କାହିଁକି କୁଣ୍ଠିତ, ତା'ର ଭିତରି କାରଣ ମୁଁ ବୁଝି ପାରେ ନାହିଁ । ଥରେ ଦୁଇଥର ଦେଖିଛି-ପରିଚୟ ପଚାରିବା ସମୟରେ ତା'ର ଆଖିରୁ ଦୁଇ ଧାର ଲୁହ ଗଡ଼ିଯାଏ ।

ଦିନ ରହେ ନାହିଁ । ସାତ ଆଠ ଦିନ ବିତି ଯାଇଛି ଏଭିତରେ ତିନି ଚାରି ଥର ମୁଁ ନବୀନ ଘରକୁ ଯାଇ ସେ ମୋଟର କମ୍ପାନୀ ଏଜେଣ୍ଟଙ୍କ ସଙ୍ଗେ କଥା ବାର୍ତ୍ତା କରିଛି । ନବୀନ ଆଉ କମ୍ପାନୀ ଏଜେଣ୍ଟ ଚଉଧୁରୀ ମଧ୍ୟ ମୋର ବସାକୁ ଦୁଇ ତିନି ଥର ଆସି ମୋଟର କେତୋଟି କିଣିବାକୁ ମତେ ଅନୁରୋଧ କରିଛନ୍ତି । ମୁଁ ବି ମୋର କମ୍ପାନୀ ପାଇଁ ଗୁଳିଶି ହଜାର ଟଙ୍କାର ପାଞ୍ଚଟି

ଗାଡ଼ୀ କିଣିବାକୁ ଜବାବ ଦେଇଛୁ । କମ୍ପାନୀ ଏଜେଣ୍ଟ ଦେଇଥିବା ମୋଟର-କେଟ୍‌ଲାଗ୍ ଗୁଡ଼ିକ ମୋର ଟେବୁଲ୍ ଉପରେ ପଡ଼ିଥାଏ, ଫୁରୁସତ ପାଇଲେ ସେ ଗୁଡ଼ାକ ଲେଉଟାଏ ।

ଦିନେ ଭିକାରୀ କେଟ୍‌ଲାଗ୍ ଗୁଡ଼ିକୁ ଦେଖାଇ ପଚାରିଲା -'ବାବୁ, ଏ ନାଲି,ନେଳୀ,କଳା, ହଳଦିଆ ବହିଗୁଡ଼ିକ କଅଣ?'

ଟିକିଏ ହସି ଦେଇ କହିଲି, 'ଏ ଗୁଡ଼ାକ ସବୁ ମୋଟର କେଟ୍‌ଲାଗ୍ । ତୁ ଜାଣି ପାରୁନାହୁଁ ? ଏଥିରେ ସବୁ ଭିନ୍ନ ଭିନ୍ନ ରକମ ମୋଟରର ଛବି ଆଉ ଦାମ ଲେଖା ହୋଇଥାଏ ।'

'ବାବୁ,ମୁଁ କ ପାଠୁଆ ଯେ ଜାଣିବି । ମତେ ତ'ଅ''ଆ' ପଢ଼ିବାର ଜଣାନାହିଁ । ଏସବୁ କେଉଁଠୁ ପାଇଲେ?କିଏ ଦେଲା?'

'ଏ ସବୁ ସବୁ ସେଇ ଏଜେଣ୍ଟ,ଚଉଧୁରୀ ବାବୁ ଦେଇଛନ୍ତି । ଆଉ ଏଥିରୁ ମୁଁ ପାଞ୍ଚ ଗୋଟି ମୋଟର ବାଛିଛି ଖରୀଦ କରିବାକୁ —ପ୍ରାୟ ପଚିଶି ହଜାର ଟଙ୍କାକୁ ।'

ସେ ଆଶ୍ଚର୍ଯ୍ୟ ହୋଇ କହିଲା, 'ବାପ୍‌ରେ, ପଚିଶି ହଜାର ଟଙ୍କା ! ଟଙ୍କାଏ ମସାଏ ନାହିଁ । ଆପଣ ସେ ଲୋକଟିକୁ ଏକାଥରକେ ବିଶ୍ୱାସ କରି ଏତେ ଟଙ୍କା ଗଣିଦେବେ ?'

× × × ×

ରବିବାର ଯୋଗୁଁ ଅଫିସ୍ ସବୁ ବନ୍ଦ ଥାଏ, କିଛି କାମ ବି ନଥାଏ ଛୁଟି ଦିନଟି କପରି କଟିବ ଭାବୁଛି—ଫୋନ୍ ଡାକରା ଆସିଲା ନବୀନ ଘରୁ । ଫୋନ୍ ପାଖେ ଯାଇ 'ରିସିଭର୍' କାନରେ ଲଗାଇ ସବୁ ଶୁଣୁ ଥାଏ ।

ଭିକାରୀ ପଚାରିଲା, 'ବାବୁ, କ'ଣ କି ?ଘଣ୍ଟା କିଂ କିଂ ହୋଇ ବାଜିଲା । ଆଉ ଆପଣ ଏଇଟା କାନରେ ଦେଇ କ'ଣ କରୁଛନ୍ତି ?'

'କିଛି ନୁହେଁ—କମ୍ପାନୀ ଏଜେଣ୍ଟ କୋଡିଏ ହଜାର ଟଙ୍କା ଧରି ଆଜି ରାତି ତାଙ୍କରି ବସାକୁ ଯିବାକୁ କହୁଛନ୍ତି ।'

କିଛି କ୍ଷଣ ପରେ ଫୋନ୍ କଲି ଚଉଧୁରୀଙ୍କ ନିକଟକୁ— 'ଆଜି ବେଙ୍କ୍ ଛୁଟି ଯୋଗୁଁ ଟଙ୍କା ଦେଇ ପାରିବି ନାହିଁ । କ୍ଷମା କରିବେ । କାଲି ଯେ କୌଣସି ପ୍ରକାରେ ଟଙ୍କାଟା ନିଶ୍ଚୟ ଦେବି ।'

ଉତ୍ତର ପାଇଲି—'**Thank you**'

ମୁଁ ଫୋନ କରୁଥିବା କଥାସବୁ ଭିକାରୀ ଶୁଣୁଥାଏ । କିନ୍ତୁ କିଛି ପ୍ରଶ୍ନ ନକରି ଅନ୍ୟମନସ୍କ ହୋଇ କଅଣ ଭାବୁଥାଏ ।

ଆର ଦିନ ଘଟଣା ।

ରିକ୍ସାବାଲା ଆସି ଦାଣ୍ଡ ଦୁଆରେ ହାଜର । ବେଙ୍କ ଚେକ୍ ବହିଟି ଧରି ରିକ୍ସା ଉପରକୁ ଉଠିଲି । ରିକ୍ସାବାଲା ଠିଣି ଠିଣି କରି ଦୌଡ଼ି ପାଞ୍ଚ ମିନିଟ୍‌ରେ ପହଞ୍ଚାଇଦେଲା ବେଙ୍କ୍ ସାମନାରେ । ଘଣ୍ଟା ଦେଖିଲି ଏଗାରଟା । ଚେକ୍ ଭଙ୍ଗାଇ କୋଡିଏ ହଜାର ଟଙ୍କା ନଗଦ ନୋଟ୍ ବିଡ଼ାଧରି ଗଲି ନବୀନ ଘରକୁ ।

—ସେ ଦିନ ତା' ଘରେ ଭୋଜି । ସେ ମତେ ଆଦରରେ ଘର ଭିତରକୁ ନେଇ ଚଉଧୁରୀଙ୍କ ସହିତ ଭେଟେଇ ଦେଲା । ଚଉଧୁରୀ ଚୌକିରୁ ଉଠି ହାତଧରି ମତେ ସୋଫା ଉପରେ ବସାଇ ନାନା ଗପ ସପ ବାଢ଼ିବାରେ ଲାଗିଲେ । ନବୀନ ବିନୀତ ଭାବରେ କହିଲା 'ବନ୍ଧୁଗଣ, ଆପଣମାନେ ଆଜି ମୋର ଅତିଥି । ମୋର ପରମ ସୌଭାଗ୍ୟ । ଚାଲନ୍ତୁ—ଭୋଜନ ପରେ କଥାବାର୍ତ୍ତା କରିବେ ।'

ଖାଇବା କଥା ଶୁଣି ମତେ କମିତି ଅଡୁଆ ଲାଗିଲା । କହିଲି, 'ନାହିଁ ଭାଇ, କ୍ଷମା କରିବୁ । ମୋର ବିଶେଷ କାମ ଅଛି । ଚଉଧୁରୀଙ୍କ ସହିତ କଥାହୋଇ ଟଙ୍କାତକ ଦେବାକୁ ଆସିଥିଲି

ପିନା । ଖାଇବାରେ କ'ଣ ଅଛି ?'

ଚଉଧୁରୀ ଠୋ ଠୋ ହସି କହିଲେ, 'ଖାଇବାରେ କଣ ଅଛି ? ଆଜ ପରା ନବୀନ ଘୋରେ ଭୋଜ । ଆମ ପାଇଁ ସେ କଷ୍ଟ ସହି ଖାଇବା ଯୋଗାଡ଼ କରିଛି । ଆମେ ତାର ଅନୁରୋଧ ଟିକିଏ ରଖିବା ନାହିଁ ?'

ଟିକିଏ ବିଗୁର କହିଲି—'ଠିକ୍ ଠିକ୍, ଗୁଲନ୍ତୁ ତେବେ ।'

ଭିତରକୁ ଖାଇବାକୁ ଗଲୁ । ଖରାରେ ବୁଲି ଶୋଷ ହେଉ ଥାଏ । କହିଲି, 'ନବୀନ, ମୋର ତଣ୍ଟି ଶୁଖି ଯାଉଛି । ଖାଇବ କ'ଣ ? ଗିଲାସେ ଥଣ୍ଡା ପାଣି ଆଣିଲୁ, ପରେ ଖାଇବା କଥା ଦେଖିବା ।'

ସେ ହସି ହସି କହିଲା, 'ସର୍‌ବତ୍ ଟିକିଏ—'

'ହଁ, ପଗୁରୁଛୁ ବଢ଼ିଆ ରକମ ନା ?'

ସେ ଧଡ଼ ପଡ଼ ହୋଇ ଘର ଭିତରୁ ଗ୍ଲାସେ ସର୍‌ବତ୍ ଆଣି ଦେଲା ।

ବାଃ ! କି ସର୍‌ବତ୍ ସେ ! ସେ ରକମ ମୁଁ କେବେ ଗୁଖି ନଥିଲି । ପେଟ ଭରି ପିଇଲି । ଠିକ୍ ତା'ର ପାଞ୍ଚ ଛ' ମିନିଟ୍ ପରେ ମୋର ମୁଣ୍ଡ ଘୂରି ବୁଲିଲା । ଶରୀର ଅବଶ ହୋଇ ପଡ଼ିଲା । କଥା ପଦେ ବି କହିବାକୁ ଶକ୍ତି ହେଲା ନାହିଁ । ସେଇଠି ଥପ୍ କିନା ପଡ଼ିଗଲି । ତା' ପରେ କ'ଣ ହେଲା ଜାଣେନା'।-

× × ×

ନିଦ ଠକ୍ କିନା ଭାଙ୍ଗିଗଲା । ଝରକା ବାଟେ ସୂର୍ଯ୍ୟ ରଶ୍ମି ମୋ ଦେହ ଉପରେ ବାଙ୍କି ହୋଇ ପଡ଼ୁଥାଏ । ଗୁବିଲି-କେତେ ସମୟ ଶୋଇ ପଡ଼ିଲି । ଆଖି ମଳି ମଳି ଉଠି ଦେଖିଲି-ମୁଁ ଗୋଟିଏ ନୂଆ କୋଠାରେ । ଏ କ'ଣ ? ଏଠାକୁ ମୁଁ

ଆସିଲି କପରି ? କାହାର କୋଠା ? ସ୍ୱପ୍ନ ନା ସତ୍ୟ ? ମୁହଁ ବୁଲାଇ ଦେଖିଲି—ନିକଟରେ ଦଣ୍ଡାୟମାନ ପୁଲିଶ୍ ଇନ୍‌ସ୍‌ପେକ୍‌ଟର ଶ୍ରୀପତିବାବୁ । ଭୟରେ ଶରୀର କମ୍ପିଲା ।

ପୁଲିଶ୍ ଇନ୍‌ସ୍‌ପେକ୍‌ଟର ମୋ ହାତ ଧରି କହିଲେ,'ରମୁ, ଭଲ ଲାଗୁଛି ତ ?'

'ଭଲ ଅଛି । ଆପଣ କ'ଣ ମତେ ଗିରଫ୍ କରିବାକୁ ଆସିଛନ୍ତି ?'

'ଗିରଫ୍ ! ନା,ନା,ଥରେ ଦେଖିବାକୁ ।'

ସେତେ ବେଳେ ଜଣେ ତରୁଣୀ ଆସି ପାଖ ଟେବୁଲ୍ ଉପରେ କଫି ରଖି କହିଲେ, 'ବାବୁ,କଫି ନିଅନ୍ତୁ । ଥଣ୍ଡା ହୋଇଯିବ ।'

ଏ ସବୁ ଦେଖି ମୋର ବିସ୍ମୟ ବଢ଼ି ଯାଉଥାଏ ।

ତରୁଣୀ ଆଡେ ଚାହିଁ ପଚାରିଲି,'ଏ କୋଠା କାହାର ? ଏଠାକୁ ମୁଁ ଆସିଲି କପରି ?'

ସେ ଉତ୍ତର ଦେଲେ,'ଏ ପରା ହାସ୍‌ପାତାଲ୍ ।'

'ହାସ୍‌ପାତାଲ୍ ! ମୋର ତ କିଛି ବେମାର ହୋଇନାହିଁ । କିଏ ମତେ ଏଠାକୁ ଆଣିଲା ?'

ତରୁଣୀ ଟିକିଏ ହସି ଦେଇ 'ପରେ ବୁଝିବ'କହି ଚାଲିଗଲା ।

ତହୁଁ ଗୋଟାଏ ମୋଟର୍ ଆସି ସେ ଘର ସାମନାରେ ଛିଡ଼ା ହେଲା । ମୁଁ ସେ ଆଡ଼େ ଚାହିଁ ଥାଏ । ମୋଟର୍ ରୁ ଦୁଇ ଜଣ ଓହ୍ଲାଇ ମୋ ନିକଟକୁ ଆସିବାର ଦେଖିଲି । ମୁଁ କ୍ରମେ ଅବାକ୍ ହେଉଥାଏ । ତହିଁରୁ ଜଣେ ମୋ ପଛ ପଟୁ ଆସି କହିଲା, 'ରମୁ , ଭଲ ଅଛୁ ତ ?'

ଚମକି ପଡ଼ି ଦେଖିଲି—ଶିଶିର । ତା'କୁ ଦୀର୍ଘ ଚାରି ବର୍ଷ ପରେ ଦେଖି କୁଣ୍ଢାଇ ପକାଇଲି । କହିଲି,'ଆରେ,ତୁ ଏଠାକୁ କେବେ ?'

ସେ କିଛି କହିଲା ନାହିଁ ।ତା' ସଙ୍ଗେ ଥିବା ଭଦ୍ରବ୍ୟକ୍ତି ତା'କୁ ପଚାରିଲେ, ଆ ପଣ କ'ଣ ଏହାଙ୍କୁ ଜାଣନ୍ତି?'

ସେ କହିଲା,'ହଁ ଅନେକ ଦିନରୁ ଜାଣେ । ଏହିଏ ମୋ ବି.ଏ. କ୍ଲାସର ସହପାଠୀ ।'

ଶିଶିର ମତେ ସେ ଭଦ୍ର ଲୋକଙ୍କୁ ଚିହ୍ନାଇ କହିଲା , 'ଏହେଉଛନ୍ତି ସିଭିଲ୍ ସର୍ଜନ୍ ।'

ମୁଁ ନମସ୍କାର କଲି ।

ଡାକ୍ତର ଗମ୍ଭୀର କଣ୍ଠରେ ମତେ ପଚାରିଲେ , 'ଭଲ ଅଛନ୍ତି ?'

କହିଲି,'ବେଶ୍ ଅଛି ମୋର କ'ଣ ହୋଇଥିଲାକି ?'

ସେ ସ୍ମିତ ହାସ ପ୍ରକାଶ କରି କିଛି କହିଲେ ନାହିଁ ।

ଶିଶିର ଡାକ୍ତର ଙ୍କୁ ପଚାରିଲା, 'ତେବେ କ'ଣ ରମୁ ଏଥର ଘରକୁ ଯାଇ ପାରିବ ?'

'ହଁ,**Now he is alright.** ସେ ଯାଇ ପାରନ୍ତି ।'

ଡାକ୍ତର ଙ୍କ ଠାରୁ ବିଦାୟ ନେଇ ଶିଶିର ମୋର ହାତ ଧରି ଚାଲିଲା ମୋଟର୍ ଆଡ଼କୁ । ମୋଟର୍ ରେ ବସି ଦୁହେଁ ସହର ଭିତର କୁ ଗଲୁ । ଦେଖିଲୁ , ଜେଲଖାନା ନିକଟରେ ହଜାର ହଜାର ଲୋକ ରୁଣ୍ଡ ହୋଇଛନ୍ତି । କୋଳାହଳରେ ସେ ସ୍ଥାନଟି ଭାଙ୍ଗି ପଡ଼ୁଛି ।

କହିଲି,'ଶିଶିର,ଆଜି କାହିଁକି ସହରରେ ଏତେ ଚହଳ ? ଟିକିଏ ରହ,ଶୁଣିବା କ'ଣ ହେଲା ।'

ସେ କିଛି ନକହି ମୋଟର୍ ରଖିଲା ଜେଲଖାନା ସାମ-ନାରେ । ଦୁହେଁ ମୋଟର୍ ରୁ ଓହ୍ଲାଇ ଜେଲଖାନା ଭିତରେ ପ୍ରବେଶ କଲୁ । ବୁଲୁ ବୁଲୁ ଦେଖିଲି, ଗୋଟାଏ କୋଠରୀ ରେ ନବୀନ ଆଉ ଚଉଧୁରୀ ବନ୍ଦୀ ହୋଇ ରହିଛନ୍ତି । ସେମାନଙ୍କୁ ସେପରି ଦେଖି ଆଶ୍ଚର୍ଯ୍ୟ ଓ ଦୁଃଖିତ ହୋଇ ନିକଟ କୁ ଯାଇ ପଚାରିଲି, 'ହେଲା କ'ଣ ?'

ଦୁହେଁ କିଛି ନ କହି ମୁଣ୍ଡ ପୋତି ଦେଲେ ।

ଶିଶିର ଆସି କହିଲା, 'କ'ଣ କରୁଛୁ ? ଆ, ଯିବା ।'

ପଚାରିଲି, 'ଏମାନଙ୍କର ହେଲା କ'ଣ ?'

ସେ ହସି ହସି କହିଲା, 'ହେଲା କ'ଣ ବୁଝିବୁ ପରେ ।' ଏତିକି କହି ମୋର ହାତ ଧରି ମୋଟର୍ ରେ ବସାଇଲା । ଦୁହେଁ ମୋ ବସାକୁ ଫେରିଲୁ । ପୂଝାରୀ ଦୁଆର ପାଖରେ କାବ୍‌ବା ହୋଇ ପଚାରିଲା-'ବାବୁ, କାଲିଠୁ ଆପଣ କୁଆଡେ ଯାଇଥିଲେ? ଆପଣଙ୍କୁ ନବୀନ ଓ ସେ ନୂଆ ବାବୁ ହତ୍ୟା କରିଛନ୍ତି ବୋଲି ସହରଯାକ ଖବର । ଓଃ ! ଭଗବାନ !'

ଘର ଭିତର କୁ ଗଲୁ । ଦୁହେଁ ଚଉକିରେ ବସିଲୁ । ହଠାତ୍ ମନେ ପଡ଼ିଲା ଭିକାରୀ ର କଥା । ପୂଝାରୀ କୁ ପଚାରିଲି 'ଭିକାରୀ କାହିଁ ? କୁଆଡେ ଯାଇଛି ?'

ସେ କହିଲା, 'ବାବୁ, କାହିଁ କାଲିଠୁଁ ତ ତା'ର ଦେଖାନାହିଁ।'

ଭିକାରୀ ନଥିବା କଥା ଶୁଣି ମନରେ ଅଶାନ୍ତ ଜନ୍ମିଲା ।

ଶିଶିର ପଚାରିଲା, 'କରେ, କ'ଣ ଭାବୁଛୁ ? କାହାପାଇଁ ?'

କହିଲି, 'କିଛି ନୁହେ—ଗୋଟିଏ ଭିକାରୀ କୁ ଘରେ କେତେ଼ ଦିନୁ ରଖିଥିଲି । ତା'କୁ ମୁଁ ଖୁବ୍ ଭଲ ପାଉଥିଲି । ସେ ବିଚରା ଏବେ କୁଆଡେ ଚାଲି ଯାଇଛି । ତା'ପାଇଁ ଟିକେ

ଶୋଚନା କରୁଛି ।'

ସେ କହିଲା,'ଶୋଚନା ! କାହିଁକି ? ଭିକାରୀ ତ ତୋ ନିକଟ ରେ ଅଛି ।'

'ନିକଟରେ ! କାହିଁ,କେଉଁଠି ?'

'ଭିକାରୀ ପରି ମୁଁ ।'

'ନା,ନା, ଅସମ୍ଭବ । ତୁ 'ଭିକାରୀ' ବୋଲି କହିଲେ ଲୋକେ ହସିବେ ।'

ସେ କିଛି ନକହି ପକେଟ୍ରୁ ବାହାର କରି ମୋ ହାତକୁ ଖଣ୍ଡିଏ ପତ୍ର ବଢ଼ାଇ ଦେଲା ।

ପତ୍ର ପଢ଼ୁ ପଢ଼ୁ ଦେହ ଥରିଗଲା । ରୋମ ଟାଙ୍କୁରି ଗଲା । ଏ କ'ଣ ! ନବୀନର ଏ ଲେଖା ! ସେ ଏଡ଼େ ମାଗି-ମ୍ପିକ !! ମୋର ଧନ ନେଇ,ମୋର ଜୀବନ ନେବା ପାଇଁ ଏ ଷଡଯନ୍ତ୍ର ! ଆଉ ପଢ଼ି ପାରିଲି ନାହିଁ । ଶିଶିର ମୁହଁ କୁ ଅବାକ୍ ହୋଇ ଚାହିଁ ରହିଲି ।

ଶିଶିର କହିଲା,'ହେଲା କ'ଣ ଏବେ ଜାଣିଲୁ ?'ଆଉ କହିଗଲା ସମସ୍ତ ଘଟଣା । ସେ କପରି ପତ୍ରଟି ପାଇ ଭିକାରୀ ବେଶରେ ତା'ର ପଛେ ପଛେ ଲାଗି ରହିଥିଲା ।

ଆଶ୍ଚର୍ଯ୍ୟ ରେ ପଚାରିଲି, 'ତୁ ଏତେ ରହସ୍ୟ ଜାଣିଲୁ କିପରି ?'

ସେ ହସି ହସି କହିଲା,'ମୁଁ ପରା ଡିଟେକ୍ଟିଭ୍ ଇନ୍ସ୍-ପେକ୍ଟର୍ ।'



# କ୍ଷମା

ପୌଷ ସନ୍ଧ୍ୟା ।

ରାସ୍ତାର ଇଲେକ୍‌ଟ୍ରିକ୍ ଖମ୍ବ ଗୁଡ଼ାକ ଉପରେ ଦୀପ ମିଞ୍ଜି ମିଞ୍ଜି ହୋଇ ଜଳି ଉଠିଲା । କୋହଲ ପବନ ଟିକିଏ ଲାଗି ଦେହ ଶୀତେଇ ଉଠୁଥାଏ ।

ମୋର ବାଲ୍ୟ ସାଥୀ ଉଦୟ ଆସିଥାଏ ଗାଁକୁ ବହୁଦିନ ପରେ । ଉଦୟ ଆଉ ମୁଁ ବସି କଥା ହେଉଥାଉ ଡ୍ରଇଙ୍ଗ୍ ରୁମ୍‌ରେ । ତା'ର ଭାରତ ଭ୍ରମଣ କଥା ସେ ଯାହା କହୁଥାଏ—ମୁଁ ଶୁଣି ଥରେ ଥରେ ଆନନ୍ଦ ଅନୁଭବ ଏବଂ ଆଉ ଥରେ ଦୁଃଖ ପ୍ରକାଶ କରୁଥାଏ । ରାସ୍ତାରେ ସାଇକଲ୍‌ରେ ଯାଉ ଯାଉ ଠାଏଁ ଠାଏଁ ଜଙ୍ଗଲ ଭିତରେ ଲୁଟେରା ଡକାୟତଙ୍କ ଅତ୍ୟାଚାର କଥା ଶୁଣି ଦେହ ଭୟରେ ଥରି ଉଠୁ ଥାଏ ।

କିଛି କ୍ଷଣ ଏପରି ସମ୍ଭାଷଣ ପରେ ଉଦୟ ଟିକିଏ ହସି ଦେଇ ମତେ କହିଲା, 'ଭାଇ, ଚାଲ, ଆଜି ସିନେମା ଦେଖି ଆସିବା । ମୁଁ ସମୟ ନପାଇ ଅନେକ ଦିନ ହେଲା ସିନେମା ଦେଖି ନାହିଁ ।'

ହସି ଦେଇ କହିଲି, 'ଆଶ୍ଚର୍ଯ୍ୟ କଥା । କଣ କହୁଛୁ ? ତୁ ଆଜି ଯାଏଁ କେତେ ବଡ ବଡ ସହର ବୁଲିଥିବୁଣି ; କେଉଁଠି ହେଲେ ସିନେମା ଦେଖିନୁ ? ଆଶ୍ଚର୍ଯ୍ୟଲୋକ ! ମୁଁ ଏ ଭଳିଆ ତ—କେବେ ଦେଖିନାହିଁ ।'

ଉଦୟ କହିଲା , 'ବାଃ ! ତୋ'ର କଥାରେ କି ଅର୍ଥ ଅଛି ? 'ଟୁରିଷ୍ଟ' ମାନେ କ'ଣ ଖାଲି ସିନେମା ଦେଖିବାକୁ ଏତେ କଷ୍ଟ ସହ୍ୟ କରି ଘରୁ ବାହାରି ଆନ୍ତି ? ତୁ ଯଦି ସେପରି ଟୁର୍ କରି ଥାନ୍ତୁ, ତେବେ ତୋକଥା ତୁ ନିଜେ ଜାଣିଥାନ୍ତୁ । ମୁଁ କହିଲେ କ'ଣ ହେବ ? ଶୁଣିବୁ— 'ଟୁରିଷ୍ଟ'ମାନେ ମଉଜ ମଜଲିସ୍ କରି ଫେରିଥାନ୍ତି ।'

ଟଣ୍ କିନା ଘଣ୍ଟାଏ ବାଜିଲା ।

ଘଡିଟାକୁ ଥରେ ଚାହିଁଲି । ଦେଖିଲି ସାଢ଼େ ସାତ । ଉଦୟର ପିଠି ଉପରେ ଚାପୁଡ଼ା ଟିଏ ଦେଇ କହିଲି, 'ସିନେମା କାଲିକି ଦେଖିବା । ଆଉ ଆଜି ସମୟ କାହିଁ ? ଦେଖ-ସାଢ଼େ ସାତ ।'

'ନା, ନା, ଆଜି ନିଶ୍ଚୟ ଯିବା । କାଲିକି ମତେ ଟିକିଏ କାମଅଛି , ଯାଇ ହେବ ନାହିଁ ।'

ମୁଁ ତର ତର ହୋଇ 'ବ୍ରେକେଟ୍'ରେ ଝୁଲୁ ଥିବା କମିଜ ଖଣ୍ଡେ ଗଳାଇ ଦେଇ ଉଦୟର ହାତଧରି ବାହାରି ପଡିଲି ବାରଣ୍ଡାକୁ । ଚାକର ଦୁଇ ଖଣ୍ଡ ପାନ ଦେଇ ଚାଲି ଗଲା ତା'ର ଦୈନିକ କାର୍ଯ୍ୟରେ ଲାଗିବାପାଇ । ଦୁହେଁ ଚାଲିଲୁ ବଜାର ବାଟେ ।ରାସ୍ତାରେ ଭେଟ ହେଲା ବସନ୍ତବାବୁଙ୍କ ସହିତ । ବସନ୍ତ ବାବୁ ହସି ହସି କହିଲେ, 'ଓଃ,ନମସ୍ତେ, ନମସ୍ତେ ।'

ଆମେବି 'ନମସ୍ତେ' 'ନମସ୍ତେ' କହି ରାସ୍ତାରେ ଠିଆହେଲୁ ସେ ଗମ୍ଭୀର କଣ୍ଠରେ ପ୍ରଶ୍ନ କଲେ , 'ଶୀତରେ

ଏତେବେଳେ କୁଆଡେ ?'

କହିଲି— 'ଉଦୟ ବହୁ ଦିନ ପରେ ଆସିଛି । ସିନେମା ଦେଖିବାକୁ ଯାଉଚୁ । ବୋଧହୁଏ ସିନେମା ଆରମ୍ଭ ହୋଇ ନ ଥିବ ।'

ସେ କହିଲେ 'ସିନେମା ! ବାଃ ! ମୁଁ ପରା ଆଜ ସେଠାକୁ ଯାଉଛି । ଲୋକେ କୁହା କୁହି ହେଉଛନ୍ତି-ଫିଲ୍ମ୍‌ଟି ଖୁବ୍ ବଢ଼ିଆ। ଚାଲ ଶୀଘ୍ର ଯିବା । ନଚେତ୍ ଟିକଟ ପାଇବା ମୁଷ୍କିଲ୍ ହେବ ।'

ତିନିହେଁ ଚାଲୁ ଚାଲୁ ପହଞ୍ଚିଲୁ 'ସିନେମା ହଲ୍' ନିକଟସ୍ଥ ଗୋଟିଏ ଚା'ଦୋକାନରେ । ବସନ୍ତ ବାବୁ ତିନି କପ୍ ଚା' ପାଇଁ ବରାଦ ଦେଲେ । ଶୀତରେ ଦେହ ଥରି ଉଠୁଥାଏ । ପକେଟରୁ ସିଗାରେଟ୍ ବାକ୍ସଟି ବାହାର କରି ବସନ୍ତବାବୁଙ୍କୁ ଖଣ୍ଡିଏ ନେବା ପାଇଁ ଅନୁରୋଧ କଲି । ସେ ସିଗାରେଟ୍ ଟିଏ ନେଇ ଧନ୍ୟବାଦ ଟିଏ ଦେଲେ । ମୁଁ ଜାଣେ—ଉଦୟ ସିଗାରେଟ୍ ଖାଏ ନାହିଁ; ତେଣୁ ତାକୁ ନ ମାଗି '**Excuse me**'ବୋଲି କହିଲି ।

ଦୋକାନ—ଟୋକା ତିନି କପ୍ ଚା' ଆଣି ଟେବୁଲ୍ ଉପରେ ଥୋଇଦେଇ ଚାଲିଗଲା ।

ମୁଁ ତ ଚା' ପ୍ରିୟ । ପ୍ରଥମେ କପ୍ ଉଠାଇ ଚା' ପିଉଛି— ଦେଖିଲି କେଉଁଠୁ ଗୋଟାଏ ଶ୍ୟାମଳ ବର୍ଣ୍ଣ ସ୍ଥୂଳକାୟ ଲୋକ ଆସି ମୋ ନିକଟରେ ଦଣ୍ଡାୟମାନ । ମଦ୍ୟ ପାନର ଗନ୍ଧ ମହକ ଉଠୁଛି । ପଚାରିଲି, 'କଣ ?'

ସେ ଲୋକ କିଛି ଉତ୍ତର ନଦେଇ ମୋ ନିକଟରୁ ଟିକିଏ ଘୁଞ୍ଚି ଉଦୟର ଗାଲରେ ନିର୍ମମ ଚାପୁଡ଼ା ଟିଏ ଦେଲା ।ସେ ଶବ୍ଦରେ ମୋର ହାତରୁ ଅଧପିଆ ଚା' କପ୍‌ଟି ଖସି ତଳେ କଚଡ଼ା ହୋଇ ପଡ଼ିଗଲା । କିଛି କହି ପାରିଲି ନାହିଁ । ନିର୍ବାକ୍ । ଦେଖିଲି ଉଦୟର

ଆଖି ଦୁଇଟିରୁ ଲୁହ ଝର ଝର ହୋଇ ଗଡ଼ି ପଡ଼ୁଛି ।

ଏ କାଣ୍ଡ ଦେଖି ବସନ୍ତ ବାବୁ ଧଡ଼୍ କରି ଚୌକିରୁ ଉଠି ସେ ଲୋକଟିକୁ ଜୋରରେ ଭିଡ଼ି ଧରିଲେ । ଏ ଘଟଣା ଦେଖି ନିକଟସ୍ଥ ବଜାରର ଲୋକେ 'ହୋଟେଲ୍' ଭିତରେ ପଶି ଆମର ଚତୁର୍ଦ୍ଦିଗେ ଘେରିଗଲେ । ହୋଟେଲ୍ ବାଲା ଆଉ ବସନ୍ତ ବାବୁଙ୍କ ଠାରୁ ସମସ୍ତ ଖବର ଶୁଣି ଜନତା ଭିତରୁ କିଏ କହିଲା, 'ଏ ପାଷଣ୍ଡକୁ ପୁଲିଶ୍ ଜିମା ଦିଅ,'—କିଏ ଅବା କହିଲା—'ନା,ନା, ପୁଲିଶ୍ ଜିମା କିଆଁ ଦେବ ? ପ୍ରହାର କର ।' ଏପରି କିଏ କେତେ କହି ଗଲେ, ତା'ର କଳନା ନାହିଁ ।

ଲୋକ ଗହଳରୁ ଜଣେ ବାହାରି ସେହି ପାଷାଣ୍ଡର ମଥା ଉପରେ ଯେତେ ବେଳେ ପ୍ରହାର କଲା—ସେ ଅଚେତନ ଅବସ୍ଥାରେ ତଳେ ପଡ଼ିଗଲା ।

ଏ ଦୃଶ୍ୟ ଦେଖି ଉଦୟ ସେ ଲୋକର ହାତ ଧରି କହିଲା- 'ଭାଇ,ତା'କୁ ମାରନା'। ମତେ ମାର । ତା'ର କିଛି ଦୋଷ ନାହିଁ । ଯାହା ହେବାର ତ ହୋଇ ଯାଇଛି । ଏହା କିଛି ନୁହେ । ମନୁଷ୍ୟ ଏ ମର ସଂସାରରେ କେତେ ବାଧା-ବିଘ୍ନ, ନିନ୍ଦା-ଅପବାଦ, କ୍ଳେଶ-ଯାତନା ସହିବାକୁ ହେବ-ତା'ର କଳନା ନାହିଁ । ମୁଁ ବି ମନୁଷ୍ୟ; ଏଣୁ ସବୁ ସହିବାକୁ ପଡ଼ିବ । ଭାବିବାର କିଛିନାହିଁ । କ୍ଷମାକର , ଭାଇ , କ୍ଷମାକର ।'

ଏ କଥା ଶୁଣି ସମସ୍ତେ ନିର୍ବାକ୍ ।

ବସନ୍ତ ବାବୁ ଗମ୍ଭୀର ସ୍ୱରରେ କହିଲେ,'ଧନ୍ୟ !ଉଦୟ, ଧନ୍ୟ !'

କି ଉଦାରତା !

ମୁଁ ସେଇ ଦିନ ଉଦୟ ଠାରୁ ଶିଖିଲି ସହିଷ୍ଣୁତାର

ସ୍ୱରୂପ । ଖ୍ୱବଳ—ଦେଶର ବଡ ବଡ ନେତାମାନେ ଏପରି ଅକଳନ କଷ୍ଟ ସହ୍ୟ କରି ଆଜ ଦେଶର କୋଳରେ ଉଚ୍ଚ ଆସନ ଗ୍ରହଣ କରି ଯଶସ୍ୱୀ ଓ ଦେଶର ମଙ୍ଗଳ ସାଧନରେ ବ୍ରତୀ ହୋଇଛନ୍ତି ।

ଜୟହିନ୍ଦ୍ ।



Printed by Rajah J. D. Verma,
AT "SRI KAMAL KUMARI PRESS".
TEKKALI 1951